


ଚତୁର୍ଥ ବର୍ଷ ● ଅପ୍ରେଲ, ୧୯୫୫ ● ନବମ ସଂଖ୍ୟା

# ସାଗର ତଳର ରତ୍ନ

ଅଧ୍ୟାପକ ଡକ୍ଟର ଶ୍ରୀ ବସନ୍ତ କୁମାର ବେହୁରା ପି.ଏଚ୍.ଡି

ମଣି, ମୁକ୍ତା, ହୀରା, ନୀଳା, ମୋତି, ମାଣିକର କଥା ଆମେ ଗଳ୍ପରେ ବହୁତ ପଢୁ । ଏ ସବୁ ଅତି ମହାର୍ଘ ଓ ମୂଲ୍ୟବାନ ପଦାର୍ଥ । ଏ ସମସ୍ତ ମଧ୍ୟରୁ କେବଳ ମୁକ୍ତା ଗୋଟିଏ ପ୍ରାଣୀର ଦେହରୁ ସଂଗୃହୀତ ହୁଏ । ମୁକ୍ତାର ଜୀବନ-ଇତିହାସ ରହସ୍ୟମୟ । ପଦ୍ମପରି ସୁନ୍ଦର ଫୁଲ ପଙ୍କରୁ ଜାତ ହୁଏ । ସେହିପରି ମୁକ୍ତାର ଉତ୍ପତ୍ତି ହୁଏ ପଙ୍କବାସୀ ଗୋଟିଏ ଅତି ହେୟ ପ୍ରାଣୀ—ଶାମୁକା ଭିତରେ । ତମମାନଙ୍କ ମଧ୍ୟରୁ ଅନେକ ପିଲାଦିନେ ଶାମୁକାରେ ଦୁଧ ପିଇଥିବ । ଲକ୍ଷ୍ୟ କରିବ, ଏହାର ଭିତର ଅତି ଚିକ୍କଣ ଓ ଚିକ୍ ଚିକ୍ କରେ ଓ ବାହାର ପାଖ କଳାସିଆ । ତାହା ଶାମୁକା ନାମକ ଜୀବ ଦେହର ଖୋଳପା । ଜାଣିରଖ ଯେ ପ୍ରତ୍ୟେକ ଜାତିର ଶାମୁକାର ମାଂସଳ ଦେହ ଏଇପରି ଦୁଇଟି ଖୋଳପା ଦ୍ୱାରା ଆବୃତ । ଆବଶ୍ୟକ ଅନୁସାରେ ଶାମୁକା ତା'ର ମାଂସପେଶୀ ସାହାଯ୍ୟରେ ଏହି ଖୋଳ ମେଲାକରି ପରେ ପୁଣି ବନ୍ଦ କରିପାରେ ।

ଅନେକ ଜାତିର ଶାମୁକା ଅଛନ୍ତି । ସେଗୁଡ଼ିକ ଭିନ୍ନ ଭିନ୍ନ ଆକାରର ଓ ସେମାନଙ୍କର ଖୋଳପାର ରଙ୍ଗ ଭିନ୍ନ ଭିନ୍ନ ପ୍ରକାରର ହୋଇଥାଏ । ଶାମୁକାମାନେ ଜାତିଭେଦରେ ନଦୀ, ନାଳ, ପୋଖରୀ ଓ ସମୁଦ୍ରରେ ବାସ କରନ୍ତି । ଜାପାନ ସମୁଦ୍ର, କାଲିଫର୍ଣ୍ଣିଆ ଉପସାଗର, ସିଂହଳ ଦ୍ୱୀପକୁ ବେଢ଼ିଥିବା ଭାରତ ମହାସାଗରର ଅଂଶ ଓ ଲୋହିତ ସାଗରରେ ଯେଉଁ ଶାମୁକା ମିଳନ୍ତି, ସେଥିରୁ ମାତ୍ର କେତେକ ଜାତିର ଶାମୁକାଙ୍କ ଦେହରେ ମୁକ୍ତା ପ୍ରସ୍ତୁତ ହୁଏ ।

'ଏମ୍‌ବାର ଗ୍ରିସ୍' ନାମକ ଅତର ଯେପରି ରୋଗାକ୍ରାନ୍ତ ତିମି ଶରୀରରେ ପ୍ରସ୍ତୁତ ହୁଏ (ସଂସାର, ୪ର୍ଥ ବର୍ଷ, ୬ଷ୍ଠ ସଂଖ୍ୟା ଦେଖ), ମୁକ୍ତା ସେହିପରି ଆକ୍ରାନ୍ତ ଶାମୁକା ଭିତରେ ପ୍ରସ୍ତୁତ ହୁଏ । କୌଣସି କାରଣବଶତଃ, ବାହାରର କୌଣସି ସୂକ୍ଷ୍ମ ପଦାର୍ଥ ଯଦି ଶାମୁକାର କଠିନ ବହିରାବରଣ ଓ ମାଂସଳ ଦେହ ମଧ୍ୟବର୍ତ୍ତୀ କୌଣସି ସ୍ଥାନରେ ପ୍ରବେଶ କରିଯାଏ, ତେବେ ମୁକ୍ତାର ଉତ୍ପତ୍ତି ହୁଏ । ଶାମୁକାକୁ ବଡ଼ ଅଡୁଆ ଲାଗିବାରୁ, ବାହାର ପଦାର୍ଥର ଅନିଷ୍ଟକାରୀ ଶକ୍ତିର ରୋଧପାଇଁ, ତାହା ଏକ ପ୍ରକାର ରସ କ୍ଷରଣ କରେ । ଏହା ସ୍ତର ସ୍ତର ହୋଇ ପ୍ରବେଶ କରିଥିବା ପଦାର୍ଥ ଚାରିପଟେ ବସିଯାଏ । ଫଳରେ ଶାମୁକାର ଆଉ ଅନିଷ୍ଟ ହୁଏନାହିଁ । ଖୋଳପାର ଭିତର ପାଖ ପରି ଏହା ମସୃଣ ଓ ଚିକ୍କଣ ଦେଖାଯାଏ । ଏହାହିଁ ମୁକ୍ତା ।

ଶାମୁକା ଦେହରେ ଏହି ଅଭିନବ ଉପାୟରେ ଯେଉଁ ମୁକ୍ତା ପ୍ରସ୍ତୁତ ହୁଏ, ସେ ସବୁ ନାନା ଆକାରର ହୋଇଥାଏ । ଯେଉଁ ମୁକ୍ତା ଗୋଲାକାର ଓ ଯେଉଁଥିରେ ଶାମୁକା-ଲହର ସ୍ତର ସମ-ଭାବରେ ପଡ଼ିଥାଏ ଏବଂ ଯାହା ଚକ୍ ଚକ୍ କରେ, ତାହା ସବୁଠାରୁ ମୂଲ୍ୟବାନ । କେବଳ ସବୁ ସମୁଦ୍ରବାସୀ ଶାମୁକାରେ ମୁକ୍ତା ପ୍ରସ୍ତୁତ ହୁଏ ନାହିଁ, ପୁଣି ଯେତେ ମୁକ୍ତା ସଂଗ୍ରହ କରାଯାଏ, ସବୁଗୁଡ଼ିକ ମୂଲ୍ୟବାନ ନୁହେଁ । ଦୁର୍ଲଭ ଓ ବହୁବ୍ୟୟରେ ସଂଗ୍ରହ କରା ଯାଉଥିବାରୁ ମୁକ୍ତା ଏତେ ମୂଲ୍ୟବାନ ।

ସିଂହଳ କୂଳର ଭାରତ-ମହାସାଗରରେ ଶାମୁକାମାନଙ୍କ ଦେହରେ ମୁକ୍ତାର କପରି ଉତ୍ପତ୍ତି ହୁଏ, ସେ ବିଷୟ ବୈଜ୍ଞାନିକମାନେ ଆବିଷ୍କାର କରିଅଛନ୍ତି । ତମେ କୃମି ଦେଖିଥିବ । ଦୁଇ ପ୍ରକାର କୃମି ଦେଖାଯାନ୍ତି । କେତେକ ଗୋଲ ଓ ସୂତା ପରି ସରୁ; ଅନ୍ୟମାନେ ଚେପ୍ଟା ଓ ଫିତା ପରି । ଭାରତ ମହାସାଗରରେ ଯେଉଁ ଇଲ୍‌ମାଛ ଦେଖାଯାନ୍ତି, ସେମାନଙ୍କ ଦେହରେ ଜାତିଏ ଫିତାକୃମି ଦେଖାଯାନ୍ତି । ଏମାନେ ମାଛ ଶରୀରରେ ବାସ କରି ତାର ରସ ଶୋଷି ଜୀବନ-ଧାରଣ କରନ୍ତି । ଏହି ପରଜୀବୀ କୃମିମାନେ ଅଣ୍ଡା ଦେଲେ ତାହା ମାଛର ଶରୀରରୁ ବାହାରି ସମୁଦ୍ର ଜଳରେ ପଡ଼େ । ଜଳସ୍ରୋତରେ ଭାସୁ ଭାସୁ ଦୈବ-କ୍ରମେ କୌଣସି ଅଣ୍ଡା ମୁକ୍ତା-ପ୍ରସ୍ତୁତ-କାରୀ ଶାମୁକାର ମାଂସଳ ଦେହ ଓ ଖୋଳପା ମଧ୍ୟରେ ପ୍ରବେଶ କଲେ ମୁକ୍ତାରସ କ୍ଷରିତ ହୋଇ ତା' ଚାରିପଟେ ସ୍ତର ସ୍ତର ହୋଇ ବସିଯାଏ । ଏ ରୂପେ ସିଂହଳ କୂଳସ୍ଥ ଭାରତ ମହାସାଗରରେ ସାଧାରଣତଃ ମୁକ୍ତାର ଉତ୍ପତ୍ତି ହୁଏ । ପୃଥିବୀର ସମୁଦ୍ରମାନଙ୍କରେ ଯେଉଁ ସବୁ ସ୍ଥାନରେ ମୁକ୍ତା-ଶାମୁକା ମିଳନ୍ତି, ସବୁଠି ଯେ ଏଇପରି ମୁକ୍ତାର ଉତ୍ପତ୍ତି ହୁଏ, ଏପରି ଧାରଣା କରିବା ଭୁଲ ହେବ ।

ମୁକ୍ତା ତ ସମୁଦ୍ର-ବାସୀ ଶାମୁକାରେ ଗଠିତ ହୁଏ, ତାକୁ ସଂଗ୍ରହ କରାଯାଏ କିପରି ? ସମୁଦ୍ର ତଳୁ ମୁକ୍ତା-ଶାମୁକା ସଂଗ୍ରହ କରିବା ବଡ଼ କଷ୍ଟ କାମ । ବୁଡ଼ାଳୀ-ମାନେ ନୌକାରେ ମୁକ୍ତା-ଶାମୁକା ମିଳୁଥିବା ସ୍ଥାନକୁ ଯାଇ ସାଙ୍ଗରେ ଝୁଡ଼ିଟିଏ ଓ କିଛି ଓଜନିଆ ପଦାର୍ଥ ଧରି ଡିରିଗରୁ ଗୃଳଗ ଫୁଟ ତଳକୁ ଓହ୍ଲାନ୍ତି । ଓଜନିଆ ପଦାର୍ଥ ସାଙ୍ଗରେ ଧରିଥିବାରୁ ସେମାନଙ୍କୁ ଚଞ୍ଚଳ ବୁଡ଼ିବାକୁ ସୁବିଧା ହୁଏ । ବୁଡ଼ାଳୀ ଥରକେ ଅଧ-ମିନିଟ୍ ରୁ ଦେଢ଼-ମିନିଟ୍ ଯାଏ ବୁଡ଼ ସାଙ୍ଗରେ ନେଇଥିବା ପାଛିଆରେ ଶୀଘ୍ର ଶୀଘ୍ର ଶାମୁକା ଗୋଟାଇ ଭର୍ତ୍ତି କରେ । ତା ଅଣ୍ଟାରେ ବନ୍ଧାହୋଇଥିବା ଦଉଡ଼ି ହଲାଇ ଉପରକୁ ସଙ୍କେତ ଦିଏ । ନୌକାରେ ଥିବା ଲୋକେ ଦଉଡ଼ିକୁ ଟାଣି ଉଠାନ୍ତି ଓ ବୁଡ଼ାଳି ଉପରକୁ ଉଠେ । ଏ ଭଳି ଉପାୟରେ ମୁକ୍ତା-ସଂଗ୍ରହ ବଡ଼ ବିପଜ୍ଜନକ । ପ୍ରଥମତଃ, ବୁଡ଼ାଳୀକୁ ତା'ର ଦମ୍ ଉପରେ ନିର୍ଭର କରିବାକୁ ହୁଏ; ଦ୍ୱିତୀୟତଃ, ସମୁଦ୍ର ତଳ ଦେଶରେ ନାନା ଜାତିର ଓ ନାନା ଆକାରର ଶାମୁକା ବାସ କରନ୍ତି । ଦୈବାତ୍ ବୁଡ଼ାଳୀର ଗୋଡ଼ କୌଣସି ଗୋଟିଏ ବଡ଼ ଶାମୁକାର ଖୋଳପା ଦୁଇଟି ମଝିରେ ପଡ଼ିଗଲେ, ବିପଦର ଆଶଙ୍କା କରି ଶାମୁକା ତାର ଖୋଳପାକୁ ଶକ୍ତଭାବେ ବନ୍ଦ କରି ଦେବାରୁ ବୁଡ଼ାଳୀ ଗୋଡ଼ ଲାଖିଯାଏ । ନିଜକୁ ବନ୍ଧନ ମୁକ୍ତ କରୁ କରୁ ଏଣେ ବୁଡ଼ାଳୀର ଦମ୍ ଅଟକି ଯାଏ ଓ ସେ ମୃତ୍ୟୁ ମୁଖରେ ପଡ଼େ । ଏବେ ବୁଡ଼ାଳୀକୁ ପାଣିରେ ବେଶୀ ସମୟ ବୁଡ଼ ରହିବାରେ ସାହାଯ୍ୟ କରିବାକୁ କେତେକ ପ୍ରକାର ଯନ୍ତ୍ର ବାହାରିଲାଣି । ଜଳ ଫୁସ୍ ଫୁସ୍ (Aqua-lung) ତନ୍ମଧ୍ୟରୁ ଗୋଟିଏ (ସଂସାର, ୪ର୍ଥ ବର୍ଷ ୮ମ ସଂଖ୍ୟା ଦେଖ) । ଶାମୁକା ସବୁକୁ ନୌକାରେ ବୋଝାଇ କରି କୂଳକୁ ଆଣି, କୂଳର ବାଲିରେ ଖେଳେଇ ଦିଆଯାଏ । ଶାମୁକା ମରିଯିବାରୁ ଖୋଳପା ମେଲ୍ ହୋଇଯାଏ ଓ ଖରା କାକରରେ ମାଂସ ପଚିଯାଏ । ମାଛିମାନେ ତା' ଉପରେ ଭଣ ଭଣ ସଣ ସଣ ହୋଇ ଅଣ୍ଡା ଦିଅନ୍ତି । ସେ ଅଣ୍ଡାରୁ ଲଙ୍ଗୁଡ଼ିଆ ପୋକ (ମାଛିର ଲର୍ଭା) ବାହାରି ସେଇ ପଚା ମାଂସକୁ ଖାଆନ୍ତି । ଏଇମିତି କେତେ ଦିନ ବିତିଯାଏ ଓ ଶାମୁକାର ଖୋଳ ସଫା ହୋଇଯାଏ ଓ ମୁକ୍ତା ଚକ୍ ଚକ୍ କରି ଦେଖାଯାଏ । ସେଗୁଡ଼ିକୁ ସାଉଁଟି ଧୂଆ ଧୋଇ କରି ସଂଗ୍ରହ କରାଯାଏ ।

ସିଂହଳର ମୁକ୍ତା ବ୍ୟବସାୟ ଦୁଇ ହଜାର ବର୍ଷ ପୁରୁଣା । ମାତ୍ର ମୁକ୍ତା ପାଇଁ ଜାପାନ ଦେଶର ଭାରି ନାମ ଡାକ । ବୁଦ୍ଧିମାନ ଜାପାନୀ ଜାତି ବୈଜ୍ଞାନିକ ପ୍ରଣାଳୀରେ ମୁକ୍ତା ଚାଷ କରନ୍ତି । ଆମେ ଜାଣୁ, ମୁକ୍ତାର ଉତ୍ପତ୍ତି ହୁଏ—କୌଣସି ବାହାର ପଦାର୍ଥର ମୁକ୍ତା-ଶାମୁକାର ମାଂସଳ ଦେହ ଓ ଖୋଳପା ମଧ୍ୟରେ ଉପସ୍ଥିତି ଯୋଗୁଁ । ଏହି ଜ୍ଞାନର ସୁବିଧା ନେଇ ଜାପାନୀ ମୁକ୍ତା-ବ୍ୟବସାୟୀମାନେ, ସମୁଦ୍ରର ମୁକ୍ତା-ଶାମୁକାଙ୍କୁ ଜୀଅନ୍ତା ସଂଗ୍ରହ କରି ଅସ୍ତ୍ରୋପଚାରର ଦ୍ୱାରା କ୍ଷୁଦ୍ର କ୍ଷୁଦ୍ର ବୁଦ୍ଧ ମୂର୍ତ୍ତି ଓ ଅନ୍ୟାନ୍ୟ ଆକାରର ମୂର୍ତ୍ତି ମୁକ୍ତା ଗଠିତ ହେବା ସ୍ଥାନରେ ପୂରାଇ ଦିଅନ୍ତି ଏବଂ ପୁନର୍ବାର ଶାମୁକାଗୁଡ଼ିକୁ ନେଇ ସେମାନଙ୍କ ଚରା-ଭୂଇଁରେ ଛାଡ଼ିଦେଇ ଆସନ୍ତି । ଜାପାନୀମାନେ ଏଇ ଅସ୍ତ୍ରୋପଚାର କପରି ଭାବେ କରନ୍ତି, ତାହା ବ୍ୟବସାୟ ଦୃଷ୍ଟିରୁ ଗୋପନ ରଖିଛନ୍ତି । ମୁକ୍ତା-ଶାମୁକା ଗୁଡ଼ିକୁ ଅସ୍ତ୍ରୋପଚାର ପରେ ମୁକ୍ତ ଦେବାର କେତେବର୍ଷ ପରେ ପୁଣି ସେ ସ୍ଥାନରୁ ସେଗୁଡ଼ିକୁ ସଂଗ୍ରହ କରାଯାଏ । ଜାଣି-ରଖ ଯେ ଶାମୁକାମାନେ ସେମାନେ ବାସ କରୁଥିବା ସ୍ଥାନଠାରୁ ଖୁବ୍ ବେଶୀ ଦୂରଯାଏଁ ଚଲବୁଲ କରନ୍ତି ନାହିଁ । ଶାମୁକା ଦେହ ଭିତରେ ଯେଉଁସବୁ ମୂର୍ତ୍ତି ପ୍ରବେଶ କରାଯାଇ ଥିଲା, ସେଥିରୁ କେତେକଙ୍କ ଚାରି ପାଖରେ ସୁନ୍ଦର ଭାବେ ମୁକ୍ତା-ରସର ସ୍ତର ବସି ଯାଇଥାଏ । ତେଣୁ ଏହି ଉପାୟରେ ମୁକ୍ତାର ବୌଦ୍ଧ-ମୂର୍ତ୍ତି ଓ ଅନ୍ୟାନ୍ୟ ମୂର୍ତ୍ତି ମିଳେ । ଏଗୁଡ଼ିକ ବହୁ ମୂଲ୍ୟରେ ବିକ୍ରୀ ହୁଏ । ଏଭଳି ପ୍ରସ୍ତୁତ ମୁକ୍ତାକୁ କେହି କେହି "କୃତ୍ରିମ ମୁକ୍ତା" ଆଖ୍ୟା ଦେଇଥାନ୍ତି । ଏହା ଠିକ୍ ନୁହେଁ । କାରଣ କୃତ୍ରିମ ଉପାୟରେ ବାହାର ପଦାର୍ଥ ଶାମୁକା-ଜୀବ ଦେହରେ ପୂରାଇ ଦିଆଗଲେ ମଧ୍ୟ ମୁକ୍ତା ଗଠିତ ହୁଏ—ସମ୍ପୂର୍ଣ୍ଣ ପ୍ରାକୃତିକ ଭାବେ ।

କୃତ୍ରିମ ମୁକ୍ତା ବା ନକଲ ମୁକ୍ତା ମଧ୍ୟ ବଜାରରେ ମିଳେ । ଏହାର ମୂଲ୍ୟ ପ୍ରକୃତ ମୁକ୍ତା ତୁଳନାରେ ଅତ୍ୟନ୍ତ କମ୍ । ମାଛମାନଙ୍କ ଦେହରୁ ରାସାୟନିକ ପ୍ରଣାଳୀରେ ଏକ ପ୍ରକାର ପଦାର୍ଥ ପ୍ରସ୍ତୁତ କରାଯାଏ । ଗୋଲ ଗୋଲ ମହମ ତିଆରି କରି ତା' ଉପରେ ଉକ୍ତ ରାସାୟନିକ ପଦାର୍ଥର ପ୍ରଲେପ ତିନି ଚାରିଥର ଦେଲେ ତାହା ମୁକ୍ତା ପରି ଚକ୍ ଚକ୍ କରେ; ମାତ୍ର ଏହା ବେଶୀ ଦିନ ସ୍ଥାୟୀ ନୁହେଁ ।

---

# ଆଲଟ୍ରା ସୋନିକ୍ ସର୍ଜରୀ (Ultra-sonic Surgery)

ଶ୍ରୀ ବସନ୍ତକୁମାର ଦାସ ବି.ଏସ୍‌ସି.

ଅଫିସ ଯିବା ପୂର୍ବରୁ ପ୍ରତିଦିନ ସକାଳେ ଖିଅର ହେବାକୁ ଖୁବ୍ ଅଡୁଆ ଲାଗେ, ନୁହେଁ ? ଆପଣ ସେଭେନ୍ ଓ'କ୍ଲକ୍ ବ୍ଲେଡ୍, ବାର୍ବରର ଖୁର ବା ଫିଲିପ୍ସ ଇଲେକ୍ଟ୍ରିକ୍ ରେଜାର ବ୍ୟବହାର କରନ୍ତୁ ନା କାହିଁକି, ପ୍ରତିଦିନ ଖିଅର ହେବାକୁ ନିଶ୍ଚୟ କଷ୍ଟ ଲାଗିବ । ନିକଟ ଭବିଷ୍ୟତରେ କିନ୍ତୁ ଏ ଅସୁବିଧା ରହିବ ନାହିଁ । ଚୌକିରେ ବସି କେବଳ ବୋତାମ-ଟିଏ ଟିପିଲେ ହେଲା । ଆପଣ ଦେଖି ପାରିବେ ନାହିଁ । ହୁଏତ ବୁଝି ମଧ୍ୟ ପାରିବେ ନାହିଁ । କେବଳ ଅନୁଭବ କରିବେ ଏକ ଅଦୃଶ୍ୟ ଶକ୍ତି ଆପଣଙ୍କର ଅଲକ୍ଷ୍ୟରେ ନିଶ ଦାଢି ସବୁ ସଫା କରିଦେବ ।

ଏହି ଅଦ୍ଭୁତ ଶକ୍ତିଟି ହେଉଛି ଶବ୍ଦ । ଅବଶ୍ୟ ଏ ଶବ୍ଦ ଆମକୁ ଶୁଣାଯାଏ ନାହିଁ । ଶବ୍ଦ, ଅଥଚ ଶୁଣା ନ ଯାଏ କିମିତି ?

ଆମେ ଜାଣୁ ଶିହରଣରୁ ଶବ୍ଦର ଉତ୍ପତ୍ତି । ଯେ କୌଣସି ଜିନିଷ ହଲିଲେ ଶବ୍ଦ ହୁଏ । ସିତାର କମ୍ବା ବେହେଲା ବାଜୁଥିବା ବେଳେ ଏହାର ତାର ଖୁବ୍ ଜୋରରେ ଦୋହଲୁଥିବାର ସମସ୍ତେ ଦେଖିଥିବେ ।

ପରୀକ୍ଷା ଦ୍ୱାରା ଜଣାଯାଇଛି ସାଧାରଣ ବାଦ୍ୟ ଯନ୍ତ୍ରର ତାର୍ ଏକ ସେକେଣ୍ଡରେ ପ୍ରାୟ ୩୦୦ ଥର ଦୋହଲି ଥାଏ । ଟିକିଏ ନିରୀକ୍ଷଣ କଲେ ଜଣାଯିବ ଯେ ଶବ୍ଦ ହେଉଥିବାବେଳେ ପ୍ରତ୍ୟେକ ଜିନିଷର ଶିହରଣ ହୋଇଥାଏ । ଖାଲି ଆଖିକୁ ହୁଏ ତ ଦେଖାଯାଏ ନାହିଁ । ଏକ ସେକେଣ୍ଡରେ ୧୦ ଥରରୁ କମ୍ ଶିହରଣ ହେବାଦ୍ୱାରା ଯେଉଁ ଶବ୍ଦ ଉତ୍ପନ୍ନ ହୁଏ, ତାହା ଖୁବ୍ କ୍ଷୀଣ ଏବଂ ଆମେ ଶୁଣି ପାରୁନା । ସେହିପରି ଏକ ସେକେଣ୍ଡରେ ୨୦୨୫୦ ଥରରୁ ବେଶୀ ଶିହରଣ ଦ୍ୱାରା ଯେଉଁ ଶବ୍ଦ ଉତ୍ପନ୍ନ ହୁଏ, ତାହା ଅତିଶୟ କର୍କଶ । ଏପରି ଶବ୍ଦକୁ ଗ୍ରହଣ କରିବାର ଶକ୍ତି ଆମ କାନର ନାହିଁ । ସେଥିପାଇଁ ଏହାକୁ Ultra sound ବା ଅଶ୍ରାବ୍ୟ ଧ୍ୱନି କୁହାଯାଏ ।

ପେଚା, ବାଦୁଡ଼ି, ମୂଷା ପ୍ରଭୃତି କେତେକ ନିମ୍ନ ସ୍ତରର ଜୀବ ଅନବରତ ଅଶ୍ରାବ୍ୟ ଚିତ୍କାର କରିଥାନ୍ତି । ପୃଥିବୀ ଓ ଅନ୍ୟାନ୍ୟ ଗ୍ରହ ଉପଗ୍ରହ ଗୁଡ଼ିକ ପ୍ରଚଣ୍ଡ ଗତିରେ ପରିଭ୍ରମଣ କରନ୍ତି । କିନ୍ତୁ ଆମେ ଏହାର କୌଣସି ଶବ୍ଦ ଶୁଣି ପାରୁ ନାହିଁ କାହିଁକି ? କାରଣ ଏହି ଘୂର୍ଣ୍ଣନ ଦ୍ୱାରା ବାୟୁମଣ୍ଡଳ ଓ ମହାଶୂନ୍ୟ ମଧ୍ୟରେ ଏକ ସେକେଣ୍ଡରେ ୬୦,୦୦୦ ଥରରୁ ବେଶୀ ଶିହରଣ ହୋଇଥାଏ । ଏହାକୁ ଗ୍ରହଣ କରିବାର ଶକ୍ତି ଆମର ନାହିଁ । ଯେଉଁ ଶକ୍ତି ଯେ କୌଣସି ଜିନିଷ କିମ୍ବା ବାୟୁମଣ୍ଡଳରେ କେବଳ ମାତ୍ର ଏକ ସେକେଣ୍ଡରେ ୨୦,୦୦୦ ଥର ଶିହରଣ ସୃଷ୍ଟି କରିପାରେ ତାହା ନିଶ୍ଚୟ ଅସାମାନ୍ୟ । କ୍ଷୁଦ୍ରାଦପି କ୍ଷୁଦ୍ର ପରମାଣୁରେ ବୈଜ୍ଞାନିକମାନେ ଯେପରି ବିରାଟ ଶକ୍ତିର ଆବିଷ୍କାର କରି ପାରିଛନ୍ତି, ଏହି ଅଶୁଣା ଶବ୍ଦରେ ମଧ୍ୟ ସେହିପରି ବୃହତ୍ ଶକ୍ତିର ସନ୍ଧାନ ପାଇଛନ୍ତି । ଏହି ଶକ୍ତିକୁ ଆଜିକାଲି ନାନାପ୍ରକାର ଯନ୍ତ୍ରଶକ୍ତିରେ ପରିଣତ କରାଯାଉଛି ।

କୃତ୍ରିମ ଉପାୟରେ ଅଶ୍ରାବ୍ୟ ଧ୍ୱନି ନିମ୍ନଲିଖିତ ଭାବରେ ଉତ୍ପନ୍ନ କରାଯାଏ । ଉଚ୍ଚ ଶକ୍ତିସମ୍ପନ୍ନ ବିଜୁଳି ସ୍ରୋତରେ ଏକ କ୍ୱାର୍ଜ ଫଳକକୁ ସ୍ଥାପନ କଲେ ଦ୍ରୁତ ଶିହରଣ ହୋଇ ଅଶ୍ରାବ୍ୟ ଧ୍ୱନି ତରଙ୍ଗ ସୃଷ୍ଟି ହୁଏ । ଚୁମ୍ବକୀତ କ୍ଷେତ୍ରରେ ଯେ କୌଣସି ଧାତୁର ପ୍ରସାରଣ ଏବଂ ସଙ୍କୋଚନ ଦ୍ୱାରା ମଧ୍ୟ ଅଶ୍ରାବ୍ୟ ଧ୍ୱନି ମିଳିଥାଏ ।

ଚିକିତ୍ସା କ୍ଷେତ୍ରରେ ଅଶ୍ରାବ୍ୟ ଧ୍ୱନିତରଙ୍ଗର ବ୍ୟବହାର ଦିନକୁ ଦିନ ବଢ଼ି ଚାଲିଛି । କେତେକ ଜଟିଳ ଅସ୍ତ୍ର ଚିକିତ୍ସାର ସ୍ଥାନ ଅଶ୍ରାବ୍ୟ ଧ୍ୱନି ତରଙ୍ଗ ଦଖଲ କଲାଣି । ଅକ୍ସି-ଏସିଟିଲିନ୍ ଫ୍ଲେମ୍‌ରେ ଲୁହା କାଟିଲା ପରି ଆଲଟ୍ରାସୋନିକ ପ୍ରକ୍ଷେପଣ ( Ultra sonic focussing) ଦ୍ୱାରା ଆମ ଦେହର ପ୍ରତ୍ୟେକ ଅଂଶ କାଟି ହେବ ! ଏଥିପାଇଁ ବ୍ଲକ୍ ବା କ୍ଲୋରୋଫର୍ମର ମଧ୍ୟ ଆବଶ୍ୟକତା ହେବ ନାହିଁ । ଆମେରିକାର କାସିଂ ଡାକ୍ତର-ଖାନାରେ କେତେକ ଆର୍ଥ୍ରାଇଟିସ୍ ରୋଗୀଙ୍କୁ ଏହି ଚିକିତ୍ସା ଦ୍ୱାରା ଆରୋଗ୍ୟ କରାଯାଇଛି ।

ମସ୍ତିଷ୍କ କର୍କଟକ ନିରୂପଣ ପାଇଁ ମଧ୍ୟ ଅଶ୍ରାବ୍ୟ ଧ୍ୱନିତରଙ୍ଗ ନିୟୋଜିତ କରାଯାଇ ପାରେ । ଏହି ତରଙ୍ଗ ମସ୍ତିଷ୍କ ମଧ୍ୟକୁ ପ୍ରେରଣ କରାଯାଏ ଏବଂ ଏହାର ପ୍ରତିଫଳନର ଏକ ଚିତ୍ର ନିଆଯାଏ । ଯେଉଁ ଅଂଶରେ କର୍କଟକ ହୋଇଥାଏ ତାର ଏକ ଚିତ୍ର ଚାଲିଆସେ । Echograph ବା ପ୍ରତିଧ୍ୱନି ମାପକ ଯନ୍ତ୍ରରେ ଏହି ଚିତ୍ର ଉଠାଯାଏ ।

ଆଲଟ୍ରାସୋନିକ ଖୁର କଥା ପ୍ରଥମେ କୁହାଯାଇଛି । ପ୍ରକୃତରେ ଏଥିରେ କୌଣସି ଖୁର ନ ଥାଏ । ଅଶ୍ରାବ୍ୟ ଧ୍ୱନି ତରଙ୍ଗର ପରିମିତ ପ୍ରକ୍ଷେପଣ ଦ୍ୱାରାହିଁ ନିଶ ଦାଢ଼ି ସଫା ହୋଇଯାଏ ।

କୌଣସି ପାତ୍ରରେ ପାଣିରେ ସାମାନ୍ୟ ସୋଡ଼ା ମିଶାଇ ଯଦି ଅଶ୍ରାବ୍ୟ ଧ୍ୱନି ତରଙ୍ଗ ପ୍ରବେଶ କରାଯାଏ ତେବେ ସେହି ପାତ୍ରରେ ଥିବା ଲୁଗାପଟା କିମ୍ବା ଅନ୍ୟ ଯେ କୌଣସି ଜିନିଷ ଆପେ ଆପେ ସଫା ହୋଇଯିବ ।

ବଜାରରେ ପୁରୁଣା ହୁଇସ୍କିର ଚାହିଦା ବେଶୀ । ନୂଆ ହୁଇସ୍କି ମଧ୍ୟରେ ଏହି ତରଙ୍ଗ ପ୍ରବେଶ କରାଇଲେ ଏକ ସେକେଣ୍ଡ ମଧ୍ୟରେ ଏହାକୁ ଦଶ ବର୍ଷର ପୁରୁଣା ମଦରେ ପରିଣତ କରାଯାଇ ପାରେ ।

ପ୍ଲାଷ୍ଟିକ ସାର୍ଜରି ପରି ଆଲଟ୍ରା ସୋନିକ୍ ସାର୍ଜରି ଚିକିତ୍ସାଶାସ୍ତ୍ରର ଏକ ନୂତନ ଶାଖା ଭାବରେ ଗଢ଼ି ଉଠୁଛି । ଆଲଟ୍ରା ସାଉଣ୍ଡ ଦ୍ୱାରା ହୁଏତ ଅସ୍ତ୍ରୋପଚାର ଦିନେ ଅପସାରିତ ହୋଇଯିବ ।

# ଫୁଲର ରଙ୍ଗ

ଡକ୍ଟର ଶ୍ରୀ ବିଶ୍ୱନାଥ ସାହୁ, ପି. ଏଚ୍. ଡି

ପୃଥିବୀରେ ସୁବିମଳ ସୌନ୍ଦର୍ଯ୍ୟ ରସର ସର୍ବାପେକ୍ଷା ପ୍ରଧାନ ଓ ବ୍ୟାପକ ଉପାଦାନ ବର୍ଣ୍ଣ । ଯେଉଁ ଆଡ଼କୁ ଅନାଅ ସେହି ଆଡ଼ରେ ବିଚିତ୍ର ବର୍ଣ୍ଣ ସମୁଜ୍ଜ୍ୱଳ ପ୍ରକୃତି ଆମ୍ଭମାନଙ୍କର ଚକ୍ଷୁ ଓ ମନକୁ ମୁଗ୍ଧ କରିଦିଏ । ଗଛର ପତ୍ର, ପୁଷ୍ପ ଓ ଫଳ ବର୍ଣ୍ଣରେ ପରିପୂର୍ଣ୍ଣ । ପୃଥିବୀରେ ଏହି ବର୍ଣ୍ଣର ଉତ୍ସବ ନ ଥିଲେ ଆମ୍ଭମାନଙ୍କର ଆନନ୍ଦ ଓ କବିତ୍ୱ ରସର ଏକ ପ୍ରଧାନ ଉତ୍ସ ଶୁଷ୍କ ହୋଇ ରହନ୍ତା ।

ଗଛର ପତ୍ର ସବୁଜ ବର୍ଣ୍ଣ । ସୂର୍ଯ୍ୟ କିରଣ ଧଳା; ମାତ୍ର ଏହା ସାତଟି ବର୍ଣ୍ଣର ସମଷ୍ଟି । ଯେଉଁ ପଦାର୍ଥ ଏହି ସାତଟି ବର୍ଣ୍ଣ ମଧ୍ୟରୁ ଯେଉଁଟି ଗ୍ରହଣ ନ କରି ପ୍ରତିବିମ୍ବିତ କରେ ସେହି ପଦାର୍ଥର ରଙ୍ଗ ସେହିପରି ଦେଖାଯାଏ । ପତ୍ର ଛଅଟି ରଙ୍ଗ ଶୋଷି ଶାଗୁଆ ରଙ୍ଗକୁ ପ୍ରତିବିମ୍ବିତ କରେ । ତେଣୁ ପତ୍ର ଶାଗୁଆ ଦେଖାଯାଏ । ଏହି ଶାଗୁଆ ରଙ୍ଗ କେତେଗୁଡ଼ିଏ ସବୁଜ କଣାର ସମଷ୍ଟି । ଏହି ସବୁଜ କଣାକୁ "କ୍ଲୋରୋଫିଲ୍" କୁହାଯାଏ । ପତ୍ରର କୋଷରସରେ କ୍ଲୋରୋଫିଲ୍ ଦାନା ରହିଥାଏ । କ୍ଲୋରୋଫିଲ୍ ବହନକାରୀ ଦାନାକୁ "କ୍ଲୋରୋପ୍ଲାଷ୍ଟ" କୁହାଯାଏ । ଉଦ୍ଭିଦ ଦେହର କାର୍ଯ୍ୟ ଚଳାଇବା ଲାଗି କ୍ଲୋରୋଫିଲ୍ ପ୍ରୟୋଜନ ।

ଫୁଲର ବର୍ଣ୍ଣ ନାନାପ୍ରକାର । ଏହି ବର୍ଣ୍ଣ ନିରର୍ଥକ ନୁହେଁ । ବଂଶ ରକ୍ଷା ଓ ବୃଦ୍ଧି ଲାଗି ଫୁଲର ସୃଷ୍ଟି । ପରାଗ ସଂଯୋଗ ହେତୁ ଫୁଲରୁ ଫଳର ଜନ୍ମ । ପରାଗସଂଯୋଗର ପୁରୋହିତ ହେଉଛନ୍ତି କ୍ଷୁଦ୍ର କୀଟ-ପତଙ୍ଗ । ଏହି ପ୍ରାଣୀମାନଙ୍କୁ ଆକୃଷ୍ଟ କରିବାର ପ୍ରଧାନ ଉପାୟ ବର୍ଣ୍ଣ । ସୁତରାଂ ଫୁଲର ବର୍ଣ୍ଣ ଏପରି ହେବା ଦରକାର ଯାହାଦ୍ୱାରା ସେ ସ୍ୱ ସ୍ୱ ଆବେଷ୍ଟନୀ ମଧ୍ୟରେ ସୁସ୍ପଷ୍ଟ ଓ ସହଜଦୃଷ୍ଟ ହୋଇ ପାରିବେ । ତେଣୁ ସନ୍ଧ୍ୟା ଓ ରାତିରେ ଫୁଟିବା ଫୁଲ ଧଳା ନଚେତ୍ ହଳଦିଆ, ଯଥା ମଲ୍ଲି ଓ ଜହ୍ନିଫୁଲ । ସୁତରାଂ ଫୁଲର ବର୍ଣ୍ଣ କେବଳ ସୌନ୍ଦର୍ଯ୍ୟ ବିଳାସ ନିମିତ୍ତ ନୁହେଁ; ତାର ଜୀବନରେ ଏହା ଏକାନ୍ତ ଆବଶ୍ୟକ ।

ପତ୍ର, ଫୁଲ ଓ ଫଳର ବର୍ଣ୍ଣ କେତେକ ବର୍ଣ୍ଣକାରକ ପଦାର୍ଥ ହେତୁ ଘଟିଥାଏ । ଏହି ପଦାର୍ଥକୁ "ପିଗ୍‌ମେଣ୍ଟ" କୁହାଯାଏ । ଏହି ପିଗ୍‌ମେଣ୍ଟ ସୂର୍ଯ୍ୟ କିରଣରେ ସଂଶ୍ଳେଷିତ ହୁଏ । ପତ୍ରର ସବୁଜ ବର୍ଣ୍ଣଦାନା "କ୍ଲୋରୋଫିଲ୍" ସହିତ "କାରୋଟିନ୍" ଏବଂ "ଜାନ୍ଥୋଫିଲ୍" ନାମକ ଦୁଇଟି ବିଶିଷ୍ଟ ବର୍ଣ୍ଣ ଦାନା ଥାଏ । ଏହି ତିନିଟି ଦାନାର ରସାୟନିକ ଉପାଦାନ ପ୍ରାୟ ସମାନ; ମାତ୍ର ସେହି ଉପାଦାନଗୁଡ଼ିକର ସାଜସଜ୍ଜାରେ ପୃଥକତା ହେତୁ ବିଭିନ୍ନ ପ୍ରକାର ଅଣୁ ଗଢ଼ିହୋଇ ଉଠେ । ତେଣୁ ପ୍ରତ୍ୟେକ ଅଣୁର ଗୁଣଧର୍ମ ପୃଥକ୍ ହୋଇଥାଏ ।

## କ୍ଲୋରୋଫିଲ୍—

ଦୁଇଟି ବିଭିନ୍ନ ପ୍ରକାର କ୍ଲୋରୋଫିଲ୍ ଦାନା ଥାଏ । ଏହି ଦୁଇଟି କ୍ଲୋରୋଫିଲ୍ 'କ' ଏବଂ କ୍ଲୋରୋଫିଲ୍ 'ଖ' ନାମରେ ଅଭିହିତ । କ୍ଲୋରୋଫିଲ୍ 'କ" ଅଣୁରେ କ୍ଲୋରୋଫିଲ୍ 'ଖ' ଅଣୁ ଅପେକ୍ଷା ଦୁଇଟି ଉଦଯାନ ଏବଂ ଗୋଟିଏ ଅମ୍ଳଜାନ ଅଣୁ ଅଧିକ ଥାଏ । ଏହି ଉଭୟ ଅଣୁ ପାଣିରେ ଗୋଳ ହୋଇପାରନ୍ତି ନାହିଁ । ମାତ୍ର ଆଲକହଲରେ ମିଶିଯାନ୍ତି । ଅନ୍ଧାରୁଆ ଜାଗାରେ କିମ୍ବା ମରୁଡ଼ି ଅବସ୍ଥାରେ କ୍ଲୋରୋଫିଲ୍ ତିଆରି ହୁଏ ନାହିଁ । ଗଛ ହଳଦିଆ ନଚେତ୍ ଖଇରି ପଡ଼ିଯାଏ ।

## କାରୋଟିନ୍

ଏହା ପତ୍ର, ଫୁଲ ଏବଂ କନ୍ଦାକୁ ହଳଦିଆ ରଙ୍ଗ ଦିଏ । ବିଭିନ୍ନ ପ୍ରକାରର କାରୋଟିନ୍ ଦାନା ଥିବାର ସମ୍ଭାବନା । କାରୋଟିନ୍ ଅଣୁ ଭିଟାମିନ୍ 'ଏ' ର ଜନନୀ । ସୂର୍ଯ୍ୟକିରଣର ଅନୁପସ୍ଥିତିରେ କାରୋଟିନ୍

( ୯ ପୃଷ୍ଠା ଦେଖନ୍ତୁ )

# ଶରୀର ମଧ୍ୟରେ ବିଦ୍ୟୁତ୍

ଶ୍ରୀ ସୁଧାକର ଦାଶ ବି.ଏସ୍‌ସି, ନୂଆଦିଲ୍ଲୀ

ଚାର୍ଲସ୍ ଫ୍ରାଙ୍କଏସ୍ ଡିସିଷ୍ଟର୍‌ନେ ଡୁଫେ ପ୍ରଥମେ ଫ୍ରାନ୍‌ସର ସମ୍ରାଟ ଚତୁର୍ଦ୍ଦଶ ଲୁଇଙ୍କ ଅଧୀନରେ ସୈନିକ ଥିଲେ । କିଛି ବର୍ଷ ସୈନ୍ୟବିଭାଗରେ କାର୍ଯ୍ୟ କଲାପରେ ସେ ତାଙ୍କୁ ଲୁଇ ଭର୍ସାଲିସ୍ ଉଦ୍ୟାନର ମୁଖ୍ୟ ରୂପେ ନିଯୁକ୍ତ କଲେ । ସେହି ସମୟରେ ଡୁଫେଙ୍କର ଦାର୍ଶନିକ ହେବାକୁ ଇଚ୍ଛା ହେଲା । ସେତେବେଳେ ଫ୍ରାନ୍‌ସରେ ପ୍ରାୟ ସମସ୍ତେ ବିଦ୍ୟୁତ (Electricity) ବିଷୟରେ କଥାବାର୍ତ୍ତା ହେଉଥାଆନ୍ତି କିନ୍ତୁ ତାହା ପ୍ରକୃତ କଅଣ କେହି ଜାଣି ନଥାନ୍ତି । ଡୁଫେ ଏହି ନୂଆ ଜିନିଷ ଉପରେ ଚିନ୍ତା କରିବାକୁ ଆରମ୍ଭ କଲେ ।

ସେ ଭନ୍‌ଗରିକ୍‌ଙ୍କ ଦ୍ୱାରା ନିର୍ମିତ ଘର୍ଷଣ କଳ ବିଷୟ ଜାଣିଥାଆନ୍ତି ଏବଂ ଭନ୍‌ଗରିକ୍ କିପରି ଗୋଟିଏ ଜିନିଷରୁ ଆଉ ଗୋଟିଏ ଜିନିଷକୁ ଇଲେକ୍‌ଟ୍ରିକ୍ ନେଇ ପାରୁଥିଲେ ତାହା ମଧ୍ୟ ଜାଣିଥାଆନ୍ତି । ତାଙ୍କର କାମ ଏହି ସ୍ଥାନରୁ ଆରମ୍ଭ ହେଲା । ସେ ବିଭିନ୍ନ ପଦାର୍ଥରେ ବିଦ୍ୟୁତ୍ ସଞ୍ଚାର କରାଇବାକୁ ଚେଷ୍ଟା କଲେ । ସେ ଦେଖିଲେ ଯେ ଧାତବ ପଦାର୍ଥମାନଙ୍କରେ ଏହା ସହଜରେ ଗତି କରୁଛି ଏବଂ କାଠ, କୁଟା, ମହମ ଆଦି ପଦାର୍ଥମାନଙ୍କରେ ଏହା ଗତି କରୁଛି । ଯେଉଁ ପଦାର୍ଥ ମଧ୍ୟରେ ବିଦ୍ୟୁତ୍ ସହଜରେ ଗତି କରିପାରିଲା ସେଗୁଡ଼ିକୁ ସେ କଣ୍ଡକ୍ଟର ବା ବାହକ ନାମ ଦେଲେ ଓ ଅନ୍ୟମାନଙ୍କୁ ଅ-ବାହକ ବା Non-conductor ଆଖ୍ୟା ଦେଲେ ।

ଡୁଫେ ଭାବିଲେ ପୃଥିବୀର ସମସ୍ତ ପଦାର୍ଥରେ ବିଦ୍ୟୁତ୍ ରହିଛି । କେବଳ ତାଙ୍କ କାରଖାନାର ଜିନିଷମାନଙ୍କରେ ନୁହେଁ, ବଗିଚାର ଗଛ, ପତ୍ର, ପଥର ଆଦିରେ ମଧ୍ୟ ବୈଦ୍ୟୁତିକ ପ୍ରବାହ ଅଛି ବୋଲି ସେ ମନେକଲେ । ପୁଣି ସେ ଭାବିଲେ ଯଦି ପୃଥିବୀର ସବୁ ପଦାର୍ଥରେ ବିଦ୍ୟୁତ୍ ରହିଛି ତେବେ ସେ ନିଜେ ତ ପୃଥିବୀର ଏକ ଅଂଶ । ତେବେ ତାଙ୍କ ମଧ୍ୟରେ ବିଦ୍ୟୁତ୍ ନିଶ୍ଚୟ ଗତି କରି ପାରିବ । ଗୋଟିଏ ମଣିଷ ଯଦି ତଳେ ଠିଆହୁଏ ତେବେ ତାହା ଦେହରୁ ବିଦ୍ୟୁତ୍‌ଯାକ ପୃଥିବୀ ମଧ୍ୟକୁ ଚାଲିଯିବ । ସୁତରାଂ ତାକୁ ଯଦି ଦଉଡ଼ି ଦ୍ୱାରା ଟାଙ୍ଗି ଦେଇ ତାହା ଦେହରେ ବିଦ୍ୟୁତ୍ ପ୍ରୟୋଗ କରାଯାଏ ତେବେ କଣ ହେବ ? ବିଦ୍ୟୁତ୍ କଅଣ ତା' ଦେହରେ ଜମା ହୋଇ ରହିଯିବ ? ତାପରେ କଅଣ ହେବ ? ଏହି ହେଲା ଡୁଫେଙ୍କର ଚିନ୍ତା । ପରୀକ୍ଷା କରିବେ କେଉଁଠାରେ ? ଗୁପ୍ତ ଭାବରେ କରିବାକୁ ହେବ । ନଚେତ୍ ନିଜର ବଦ୍‌ନାମ ହୋଇଯାଇ ପାରେ । ଏକାକିଆ ବି ପରୀକ୍ଷା ହୋଇପାରିବ ନାହିଁ । ସେ ଦେଖିଲେ ଯେ ଏବ୍ ନଲେଟ୍‌ଙ୍କୁ ବିଶ୍ୱାସ କରାଯାଇ ପାରେ । ସେ ଏ କଥା ଗୋପନୀୟ ରଖି ପାରିବେ ।

ଗୋଟିଏ ନିର୍ଜନ ଘରକୁ ଘର୍ଷଣ କଳ (Friction machine) ଆଣିଲେ । ପ୍ରଥମେ ଏବ୍‌ନଲେଟ୍ ଡୁଫେଙ୍କୁ ଗୋଟିଏ ଦଉଡ଼ି ସାହାଯ୍ୟରେ ଘରର କଡ଼ରେ ଝୁଲାଇ ଦେଲେ । ତାପରେ ସେ ଘର୍ଷଣ କଳ ଘୂରାଇବାରେ ଲାଗିଲେ ।

ଏବ୍ ନଲେଟ୍ କିଛି ସମୟ ପରେ ପଚାରିଲେ, "କିପରି ଲାଗୁଛି ?"

ଡୁଫେଙ୍କୁ କିଛି ବୋଧ ହେଉ ନ ଥାଏ । ସତେ କଅଣ ଦେହରେ ବିଦ୍ୟୁତ୍ ଗତି କରିବ ନାହିଁ ? ଏବ୍‌ନଲେଟ ଡୁଫେଙ୍କ ଦେହରେ ହାତ ମାରିଲେ । ନଲେଟ୍ ହାତରେ ବିଦ୍ୟୁତ୍‌ର ଆଘାତ ( shock ) ଅନୁଭବ କଲେ; ତାହା ହେଲେ ବିଦ୍ୟୁତ୍ ଦେହ ମଧ୍ୟରେ ପ୍ରବାହିତ ହୋଇଛି । ଏହିପରି ପରୀକ୍ଷା ସେହି ଘରେ ପ୍ରତିଦିନ ଚାଲିଲା । ଦିନେ ନଲେଟ୍ କଳଟିକୁ ବେଶୀ ସମୟ ଘୂରାଇ ଦେଖିଲେ ଯେ ଡୁଫେଙ୍କର ମୁଣ୍ଡବାଳସବୁ ଠିଆ ହୋଇ ଯାଇଛି ।

ଆଉ ଦିନକର ଘଟଣା । ସେ ଘରେ ପହଞ୍ଚିବା ବେଳକୁ ଅନ୍ଧାର ହୋଇ ଯାଇଥିଲା । ତେବେ ସୁଦ୍ଧା ସେମାନେ ପରୀକ୍ଷା ଚଳାଇଲେ, ଡୁଫେଙ୍କୁ ଝୁଲାଇ ଦେଇ ନଲେଟ୍ କଳ ଘୂରାଇଲେ । ଆଶ୍ଚର୍ଯ୍ୟର କଥା ।

ଡୁଫେଙ୍କ ଦେହରୁ ଆଲୋକ ଝିକ୍ ଝିକ୍ କଲା । ଡୁଫେ ଏବଂ ନଲେଟ୍‌ଙ୍କର ଆନନ୍ଦର ସୀମା ରହିଲା ନାହିଁ । ଯୁଦ୍ଧରେ ଜୟ କରିବାଠାରୁ ଏଥିରେ ସେ ଅଧିକ ଆନନ୍ଦ ଉପଭୋଗ କଲେ ।

ଡୁଫେ ତାହାହେଲେ ନିଜ ଦେହରେ ବିଦ୍ୟୁତ୍ ରଖି ପାରିଲେ । ତାହାହେଲେ ବୋତଲ ମଧ୍ୟରେ କାହିଁକି ଏହା ରଖାଯାଇ ପାରିବ ନାହିଁ ? ୧୭୪୫ ଖ୍ରୀଷ୍ଟାବ୍ଦରେ ଜର୍ମାନୀର ପୋମେରାନିଆଠାରେ ଏଡ୍‌ୱାର୍ଡ ଜର୍ଜ ଭନ୍ କ୍ଲିଷ୍ଟ ନାମକ ଜଣେ ଧର୍ମଯାଜକ ଏଥିପାଇଁ ଚେଷ୍ଟା କଲେ । ସେ ଗୋଟିଏ ବୋତଲ ରୂପା ପାଣିଆରେ ପୂରାଇଦେଲେ । ତତ୍ପରେ ଘର୍ଷଣ କଳ ଘୂରାଇ ରୂପାପାଣିଆରେ ବିଦ୍ୟୁତ୍ ସଂଯୋଗ କଲେ । ସେ ଗୋଟିଏ ତାର୍‌ଦ୍ୱାରା ଭିତର ପାଖର ରୂପାପାଣିଆ ସହିତ ବାହାର ପାଖର ବୋତଲ ଉପରେ ଥିବା ଅଂଶକୁ ଯୋଗ କଲେ । ସେ ଏପରି ଗୋଟିଏ ଆଘାତ (Shock) ପାଇଲେ ଯେ ସେ ପଡ଼ିଯାଇ ଥାଆନ୍ତେ । ସେ ତାଙ୍କର ହାତ ଓ ଛାତିମଧ୍ୟରେ ଆଘାତ ଅନୁଭବ କଲେ । ତା ହେଲେ ବୋତଲରେ ବିଦ୍ୟୁତ୍ ରହିଛି ।

୧୭୪୬ ରେ ହଲାଣ୍ଡର ଲିଡେନ୍‌ଠାରେ ପିଟର୍‌ଭନ୍ ମସେନ୍‌ବ୍ରୁକ୍ ନାମକ ଜଣେ ବିଖ୍ୟାତ ବୈଜ୍ଞାନିକ ଉପରୋକ୍ତ ପରୀକ୍ଷା ଚଳାଇଲେ । ଉପରୋକ୍ତ ଉପାୟରେ ଗୋଟିଏ ବୋତଲରେ ବିଦ୍ୟୁତ୍ ସଞ୍ଚାଳନ କଲେ । ଘର୍ଷଣ କଳ ସହିତ ଲାଗିଥିବା ତାରକୁ ତାଙ୍କର ଜଣେ ବନ୍ଧୁ ଫିଟାଇବାବେଳେ ଜୋରରେ ଲାଗିଥିବା ଆଘାତ ଅନୁଭବ କଲେ । ବୈଜ୍ଞାନିକ ମସେନ୍‌ବ୍ରୁକ୍ ଅତିଶୟ କୌତୂହଳୀ ହୋଇପଡ଼ିଲେ । ପୁଣି ଥରେ ପରୀକ୍ଷା ଚାଲିଲା । ଏଥର ସେ ନିଜ ଉପରେ ପରୀକ୍ଷା କଲେ । ସେ ମଧ୍ୟ ଆଘାତ ପାଇଲେ । ବୋତଲରେ ବିଦ୍ୟୁତ୍ ରହି ପାରିବ ବୋଲି ସେ ସିଦ୍ଧାନ୍ତ କଲେ । ତାପରେ ପରେ ଲୋକମାନେ ଏପରି ବିଦ୍ୟୁତ୍ ବୋତଲ ତିଆରି କରିବାରେ ଲାଗିଗଲେ । ମସେନ୍‌ବ୍ରୁକ୍ ଏପରି ଏକ ବୋତଲ ପ୍ରଥମେ ଲିଡେନ୍‌ରେ କରିଥିବାରୁ ଏହି ବୋତଲ ନାମ 'ଲିଡେନ୍ ବୋତଲ' (Leyden Jar) ହୋଇଗଲା । ଅବଶ୍ୟ ଏହା ପୂର୍ବରୁ ଭନ୍ କ୍ଲିଷ୍ଟ ପୋମେରାନିଆରେ ଏପରି ବୋତଲ କରିଥିଲେ କିନ୍ତୁ ସେ ତ ବିଖ୍ୟାତ ବୈଜ୍ଞାନିକ ନ ଥିଲେ ତେଣୁ ତାଙ୍କର ନାମ ଲୁଚିଗଲା । ନଚେତ୍ ଏହା ପୋମେରାନିଆ ବୋତଲ ହୋଇଥାଆନ୍ତା ।

ଲିଡେନ୍ ବୋତଲର ପ୍ରଚାର ବଢ଼ିଲା । ଲୋକେ ତିଆରି କରି ଏହା ବିକ୍ରୀ କଲେ । ସେତେବେଳେ ଲୋକେ ମଉଜ ମଜଲିସ କରିବାପାଇଁ ଏପରି ବୋତଲ କିଣି ପରସ୍ପର ଦେହରେ ବୈଦ୍ୟୁତିକ ଆଘାତ ଦେଇ ଆନନ୍ଦ ଉପଭୋଗ କରୁଥିଲେ, ନାଚ ଗୀତ ହେଲା । ତାହା ମଧ୍ୟରେ କେହି ଲିଡେନ୍ ବୋତଲ ଆଣି ଜଣକ ଦେହରେ ଲଗାଇଦେଲା ଓ ତାକୁ ଲାଗି ଯେଉଁମାନେ ବସିଥିଲେ ସମସ୍ତେ ବୈଦ୍ୟୁତିକ ଆଘାତ ପାଇ ଡେଇଁ ପଡ଼ିଲେ । ଏହା ହେଲା ଏକପ୍ରକାର ନୂଆ ଆମୋଦ ପ୍ରମୋଦର ଉପାୟ ।

---

# ଏଲ୍ୟୁମିନିୟମ୍ ନିର୍ମିତ ପାତ୍ର—ଆମ ସ୍ୱାସ୍ଥ୍ୟର ଶତ୍ରୁ

ସଂଗ୍ରାହକ—ଶ୍ରୀ ରଘୁନାଥ ପାଣିଗ୍ରାହୀ, ବି. ଏସ୍‌-ସି.

ଆଜକାଲି ଭାରତରେ ଦେଖାଯାଉଛି ଯେ, ପ୍ରତ୍ୟେକ ଗାଁ ଗହଳର ସନ୍ଧି କନ୍ଦରେ ଏଲ୍ୟୁମିନିଅମ୍ ତିଆରି ବାସନ ଖୁବ୍ ପ୍ରସାର ଲାଭ କଲାଣି । ଏହାର କାରଣ ଅନେକ ରହିଛି, ଯେହେତୁ ଏହି ଧାତୁର ବାସନ ସହଜରେ ଭାଙ୍ଗେ ନାହିଁ, ହାଲୁକା, ଶସ୍ତା, ସଫା କରିବା ପାଇଁ ସହଜ, ଏଥିରେ ଖୁବ୍ ଚଞ୍ଚଳ ଗରମ ହୁଏ ଓ ସୁନ୍ଦର ଚକ୍ ଚକ୍ ଦିଶେ । ଏହି ଧାତୁ ନିର୍ମିତ ପାତ୍ରଗୁଡ଼ିକ ସ୍ୱାସ୍ଥ୍ୟ ଓ ଅର୍ଥ ହାନି କରେ, ଏକଥା ଅଧିକାଂଶ ଲୋକେ ନ ବୁଝି କିଣି ବ୍ୟବହାର କରି ଆସୁଛନ୍ତି ।

ପ୍ରଥମେ ୧୮୯୨ ମସିହାରେ ଏହି ଧାତୁରେ ରନ୍ଧନପାତ୍ର ତିଆରି କରାଗଲା, ସେ ସମୟରେ ଅବଶ୍ୟ ବାସନ ତିଆରି କରିବା ଲୋକେ ଏହା ସ୍ୱାସ୍ଥ୍ୟପକ୍ଷରେ ବିପଜ୍ଜନକ ଏକଥା ନ ଜାଣି, ଏହାର ପ୍ରସାର ଲାଭ ପାଇଁ ଆନ୍ଦୋଳନ ଚଳାଇଲେ । ଆସ୍ତେ ଆସ୍ତେ ଗତ ୩୦ ବର୍ଷ ଭିତରେ ଏହାର ପ୍ରସାର ଖୁବ୍ ହେଲା ଓ ଲୋକେ "ମାଟିପାତ୍ର" ଛାଡ଼ି ତା ସ୍ଥାନରେ ଏଲ୍ୟୁମିନିଅମ୍ ବାସନ ବ୍ୟବହାର କଲେ, ଏହାର ବହୁଳ ପ୍ରସାର ହେବା ଫଳରେ କେତେଜଣ ବିଶେଷଜ୍ଞ ସନ୍ଦେହ କରି ଏଲ୍ୟୁମିନିଅମ୍ ପାତ୍ର ରାନ୍ଧିବା ସକାଶେ ଉପଯୁକ୍ତ କି ନାହିଁ, ଏ ସମ୍ବନ୍ଧେ ଆଲୋଚନା କରିଥିଲେ । କିଛୁଦିନ-ପରେ ଏ ସମ୍ପର୍କରେ ଲାନ୍‌ସେଟ୍‌ଙ୍କ ରିପୋର୍ଟ ୧୯୧୩ ମସିହାରେ ପ୍ରକାଶ ପାଇଲା ଓ ସେଥିରେ ଏହା ପ୍ରମାଣିତ ହୋଇଥିଲା ଯେ ଏଲ୍ୟୁମିନିଅମ୍ ତିଆରି ପାତ୍ର ରାନ୍ଧିବା ଓ ଖାଇବା ପାଇଁ ବ୍ୟବହାର କରିବାଦ୍ୱାରା କେତେକ ରୋଗ ପ୍ରଧାନତଃ କର୍କଟ (Cancer) ରୋଗ ଆକ୍ରମଣ କରିବା ଆଶଙ୍କା ରହେ ।

ଆମ ଖାଦ୍ୟରେ ଉଭୟ କ୍ଷାରୀୟ (Alkali) ଓ ଦ୍ରାବକ (Acid) ପଦାର୍ଥ ଥାଏ । ଚାଉଳ, ଡାଲି, ଫଳ, ପନିପରିବା, ଶାଗ ଇତ୍ୟାଦିରେ ଥିବା ଉଭୟ କ୍ଷାରୀୟ ଓ ଦ୍ରାବକ ପଦାର୍ଥ, ଏଲ୍ୟୁମିନିଅମ୍ ଧାତୁର ସଂସ୍ପର୍ଶରେ ଆସିଲେ ସେଥିରେ ରାସାୟନିକ ପ୍ରକ୍ରିୟା ଘଟେ, ଯା ଦ୍ୱାରା କି ଖାଦ୍ୟ ଅଖାଦ୍ୟରେ ବି ପରିଣତ ହୋଇଯାଏ । ଏହାକୁ Aluminium Poisoning କହନ୍ତି । ଏହି ରାସାୟନିକ ପ୍ରକ୍ରିୟା କମ୍ ବା ସାଧାରଣ ଉତ୍ତାପରେ ସେତେ ବେଶି ହେବା ଦେଖାଯାଇ ନ ଥାଏ କିନ୍ତୁ ଯେତେବେଳେ ଏହି ଧାତୁନିର୍ମିତ ବାସନରେ ଖାଦ୍ୟ ଜିନିଷ ରଖି ଅଧିକ ଉତ୍ତାପ ଦିଆଯାଏ ରାସାୟନିକ ପ୍ରକ୍ରିୟାର ବେଗ ବଢ଼େ ଓ ଖୁବ୍ ଶୀଘ୍ର ଖାଦ୍ୟ ଜିନିଷ ନଷ୍ଟ ହୋଇଯାଏ, ସେଥିହେତୁ "ରନ୍ଧନ ପାତ୍ର" ଏଲ୍ୟୁମିନିଅମ୍ ହେବା ସ୍ୱାସ୍ଥ୍ୟ ପକ୍ଷେ ହିତକର ନୁହେଁ ।

୧୯୩୮ ମସିହାରେ ମିଷ୍ଟର ଜେ.ଏମ୍. ବ୍ରାଉନ୍ ସତର୍କ କରାଇଦେଇ ଥିଲେ ଯେ ଏଲ୍ୟୁମିନିଅମ୍ ପାତ୍ର ଖଟା ତରକାରି ବିଶେଷତଃ ବିଲାତି ବାଇଗଣ ତରକାରି ରାନ୍ଧିବା କିମ୍ବା କ୍ଷାରୀୟ ପଦାର୍ଥ ରଖିବା ପାଇଁ ବ୍ୟବହାର କରିବା ଅନୁପଯୁକ୍ତ, ଯେହେତୁ ଏହାଦ୍ୱାରା ସ୍ୱାସ୍ଥ୍ୟ ଖରାପ ହୁଏ ।

ଡାକ୍ତର ଇ. ହାଣ୍ଡ୍ କୁପର୍ ପରୀକ୍ଷାମୂଳକ ଭାବେ ଦେଖିଥିଲେ ଯେ ଏଲ୍ୟୁମିନିଅମ୍ ଧାତୁ ପାକସ୍ଥଳୀ ଓ କ୍ଷୁଦ୍ରାନ୍ତ୍ରରୁ ଯଥାକ୍ରମେ ନିଃସୃତ ହେଉଥିବା ପାଚକରସ ଓ ଆନ୍ତ୍ରିକରସକୁ ବହୁ ପରିମାଣରେ ନଷ୍ଟ କରିଦିଏ ଓ ଏହି ଧାତୁ ଦ୍ୱାରା ସ୍ନାୟୁ-ସଂସ୍ଥାନର ଅନିଷ୍ଟ ହୋଇଥାଏ ।

ଡଃ ସିଭେସ୍କି ଏହି ଧାତୁ ରନ୍ଧନପାତ୍ର ପାଇଁ ଉପଯୁକ୍ତ କି ନାହିଁ ତାକୁ ପ୍ରମାଣ କରିବା ପାଇଁ ପ୍ରଥମେ ଏହି ଧାତୁନିର୍ମିତ ପାତ୍ରରେ ରନ୍ଧାଥିବା ଖାଦ୍ୟକୁ କେତେକ ମୂଷାଙ୍କୁ ଦେଇ ଦେଖିଲେ ଯେ ଅଧିକାଂଶ ମୂଷାଙ୍କୁ କର୍କଟ ରୋଗ (cancer) ଖୁବ୍ ଶୀଘ୍ର ଆକ୍ରମଣ କଲା ।

ଏହି ସମସ୍ତ ପରୀକ୍ଷାମୂଳକ ପ୍ରମାଣରୁ ଜଣାଯାଉଛି ଯେ ଏଲ୍ୟୁମିନିଅମ୍ ବାସନ ବ୍ୟବହାର କରିବା ଆଦୌ ଉଚିତ ନୁହେଁ । ଏହାର ବଦଳରେ ଆଗରୁ ବ୍ୟବହାର ହୋଇ ଆସୁଥିବା 'ମାଟିପାତ୍ର' ହେଉଛନ୍ତି ସର୍ବୋତ୍କୃଷ୍ଟ । ଏନାମେଲ, ଲୁହା, କଂସା କିମ୍ବା ପିତ୍ତଳ ବାସନ ବ୍ୟବହାର କରାଯାଇପାରେ, ମାଟିପାତ୍ର ବ୍ୟବହାର କରିବାକୁ ହେଲେ ପ୍ରତି ୨।୩ ମାସରେ ଥରେ ଲେଖାଏଁ ବଦଳାଇ ନୂତନ ମାଟିପାତ୍ର ବ୍ୟବହାର କରିବା ଓ ସେଥିରେ ରନ୍ଧାଯିବା ପରେ ପରିଷ୍କାର କରି ଭିତର ଓ ବାହାର ଧୋଇଦେବା ଦରକାର, ମାଟିପାତ୍ର ଗାଁ ଗହଳରେ ଓ ସହରମାନଙ୍କରେ ପାଇବା ବି ଖୁବ୍ ସହଜ; ପୁଣି କମ୍ ପଇସାରେ ବି ମିଳେ ।

ଯେତେବେଳେ ଭାରତରେ ଏଲ୍ୟୁମିନିଅମ୍ ବାସନର ବ୍ୟବହାର ଚାଲିଛି ଭବିଷ୍ୟତରେ ଭାରତ-ବାସୀଙ୍କ ସ୍ୱାସ୍ଥ୍ୟର ହାନି ଘଟିପାରେ । ଏହାକୁ ବନ୍ଦ କରିବାକୁ ହେଲେ ଲୋକଙ୍କୁ ବୁଝାଇ, ଏହି ଧାତୁନିର୍ମିତ ପାତ୍ର ଜାଗାରେ 'ମାଟିପାତ୍ର' ଯେପରି ସେମାନେ ବ୍ୟବହାର କରିବେ, ସେଥିପାଇଁ ଭାରତର ଶିକ୍ଷିତ ଲୋକେ ଚେଷ୍ଟା କରିବା ଉଚିତ ।

[ From Health & Long Life ]



( ୭ମ ପୃଷ୍ଠାର ଅବଶିଷ୍ଟାଂଶ )

ରଙ୍ଗ ସଂଶ୍ଳେଷିତ ହୋଇପାରେ । ପତ୍ର ଝଡ଼ିପଡ଼ିବା ପୂର୍ବରୁ କ୍ଲୋରୋଫିଲ ଅଣୁ ଭାଙ୍ଗି ରୁଜିଯାଏ; କାରୋଟିନ ଅଣୁ ପ୍ରଚୁରମାତ୍ରାରେ ସୃଷ୍ଟି ହୁଏ । ତେଣୁ ପତ୍ର ହଳଦିଆ ଦେଖାଯାଏ । ଶରତ ଓ ବସନ୍ତ କାଳୀନ ହଳଦିଆ ପତ୍ରରଙ୍ଗ ଏହି କାରୋଟିନ୍ ଅଣୁର ପ୍ରାଚୁର୍ଯ୍ୟ ଏବଂ କ୍ଲୋରୋଫିଲ ଅଣୁର ଶୂନ୍ୟତା ହେତୁ ଘଟେ ।

## ଜାନ୍ଥୋଫିଲ—

ଜାନ୍ଥୋଫିଲ କାରୋଟିନ୍‌ର ସଖା । ଲିଉଟିନ୍, କିଜାନ୍ଥିନ୍ ଏବଂ ଅନ୍ୟ ପ୍ରକାରର ଜାନ୍ଥୋଫିଲ ଅଣୁ ରହିଛି । ଏହା ପତ୍ରକୁ ହଳଦିଆ ଏବଂ ଈଷତ୍ ଲାଲ ରଙ୍ଗ ଦେଇଥାଏ ।

## ଆନ୍ଥୋସାୟାନିନ୍

ପତ୍ର, ଫୁଲ ଓ ଫଳର କୋଷ ରସରେ ଆନ୍ଥୋସାୟାନିନ୍ ନାମକ ଏକ ରଙ୍ଗିନ୍ ପଦାର୍ଥ ଦ୍ରବୀଭୂତ ହୋଇ ରହିଥାଏ । ଏହା ଫୁଲକୁ ନୀଳବର୍ଣ୍ଣ ଦେଇଥାଏ । ତେଣୁ ଏହାର ନାମ "ନୀଳଯାତକ" । "ଏରିଥ୍ରୋଫିଲ" ନାମକ ଅନ୍ୟ ଏକପ୍ରକାର ଅଣୁ ପତ୍ରକୁ ଲାଲରଙ୍ଗ ଦେଇଥାଏ । ମାତ୍ର ଆନ୍ଥୋସାୟାନିନ୍ ସମସ୍ତ ରଙ୍ଗର ମୂଳ । ପତ୍ରର ରସର ଅମ୍ଳ, କ୍ଷାର ଏବଂ ଅମ୍ଳ-କ୍ଷାର-ଶୂନ୍ୟ ଅବସ୍ଥା ଆନ୍ଥୋସାୟାନିନ୍‌କୁ ବିଭିନ୍ନ ରୂପରେ ପ୍ରତିଫଳିତ କରିଥାଏ । ପତ୍ର ଓ ଫୁଲର କୋଷରସ ଅମ୍ଳ ହେଲେ ଲାଲ ରଙ୍ଗ ଏବଂ କ୍ଷାର ହେଲେ ନୀଳରଙ୍ଗ ଫୁଟି ଉଠେ । ଅମ୍ଳ ଓ କ୍ଷାର ଅବସ୍ଥାର ଅନୁପାତ ଭେଦରେ ବାଇଗଣୀ, ଘନନୀଳ, ନୀଳ, ସବୁଜ, ହଳଦିଆ, ଲାଲ ଓ ନାରଙ୍ଗୀ ରଙ୍ଗ ଫୁଟିଉଠି ଫୁଲର ରଙ୍ଗ ଆଣେ ।

କଶଳୟର ଲାଲ୍‌ରଙ୍ଗ ଏହି ଆନ୍ଥୋସାୟାନିନ୍ ହେତୁ ଘଟେ । ଆମ୍ବ, ଗୋଲାପଜାମୁ ଓ ଜାମ୍ବୋଳ ଏବଂ ପୋଲାଙ୍ଗ ପ୍ରଭୃତିର କଅଁଳିଆ ପତ୍ରରେ ପ୍ରଥମେ ଆନ୍ଥୋସାୟାନିନ୍ ରଙ୍ଗ ବିକାଶ ହୁଏ ଏବଂ ଧୀରେ ଧୀରେ ସବୁଜକଣା ସୃଷ୍ଟି ହୋଇ ପତ୍ର ଶାଗୁଆ ଧରେ । ଏହି ସମୟରେ ପତ୍ର ଗଛର ଶୋଭା ବଢ଼ାଇଥାଏ । ସମଶୀତୋଷ୍ଣମଣ୍ଡଳରେ ଆନ୍ଥୋସାୟାନିନ୍ ଅଳ୍ପ ସମୟସ୍ଥାୟୀ କିନ୍ତୁ ଉଷ୍ଣମଣ୍ଡଳୀୟ ଜଳବାୟୁରେ ଏହି ବର୍ଣ୍ଣ ଚିରସ୍ଥାୟୀ । କୋଲିୟସ୍, ଆକାଲିଫା, ସାରୁଜାତୀୟ କୋଡ଼ିୟମ୍ ଏବଂ କର୍ଡିଲିନମ୍ ଶ୍ରେଣୀୟ ଗଛ ସଦା-ରଙ୍ଗିନ୍ । ଏଥିଲାଗି ଉଷ୍ଣମଣ୍ଡଳରେ ନାନାରଙ୍ଗରେ ଚିତ୍ରବିଚିତ୍ର ଗଛର ପ୍ରାଚୁର୍ଯ୍ୟ ଅତି ଅଧିକ ।

କୀଟ ପତଙ୍ଗ ଦ୍ୱାରା ପରାଗସଙ୍ଗମ ହେଉଥିବା ଫୁଲ ଅତି ସୁରଞ୍ଜିତ ଏବଂ ଚୋଫା ରଙ୍ଗରେ ପରିପୂର୍ଣ୍ଣ । ଫୁଲ ମନଭୁଲାଣିଆ ହୋଇ ପତଙ୍ଗଙ୍କୁ ଆକୃଷ୍ଟ କରିବା ଲାଗି ବୃନ୍ତ ଓ ପାଖୁଡ଼ାଗୁଡ଼ିକ ଶାଗୁଆ ନ ହୋଇ ନାନାରଙ୍ଗରେ ସୁଶୋଭିତ ହୋଇଥାନ୍ତି । ପୁଷ୍ପ ଓ ଉଦ୍ଭିଦ ଜଗତର ବିବର୍ତ୍ତନରେ ଯଦି କୀଟ ପତଙ୍ଗ ଦ୍ୱାରା ପରାଗ ସଙ୍ଗମର ଆବଶ୍ୟକତା ନ ପଡ଼ିଥାନ୍ତା ତେବେ ବୋଧହୁଏ ଏତେ ବିଭିନ୍ନ ରଙ୍ଗର ଫୁଲର ସୃଷ୍ଟି ହୋଇ ନ ଥାନ୍ତି ।

ବର୍ଣ୍ଣଦାନା ବା "ପିଗ୍‌ମେଣ୍ଟ" ମଧ୍ୟରୁ କେତେକ ପ୍ରୋଟୋପ୍ଲାଜ୍ମରେ ଏବଂ କେତେକ କୋଷରସରେ ଦ୍ରବୀଭୂତ ହୋଇ ରହିଥାନ୍ତି । ଚୋଫା ହଳଦିଆ ଫୁଲରେ ପ୍ରୋଟୋପ୍ଲାଜ୍ମ ସ୍ଥିତ ବର୍ଣ୍ଣଦାନା ଅନୁପାତ ଅଧିକ । ଆନ୍ଥୋସାୟାନିନ୍ ବର୍ଣ୍ଣଦାନା ସାଧାରଣତଃ କୋଷରସରେ ମିଶି ରହିଥାଏ ଏବଂ ଫୁଲକୁ ନୀଳ ଓ ପାଟଳ ବର୍ଣ୍ଣ ଦିଏ । ମହୁମାଛି ଏହି ନୀଳ ଏବଂ ପାଟଳ ରଙ୍ଗଦ୍ୱାରା ଅଧିକ ଆକୃଷ୍ଟ ହୋଇଥାଏ । ଆନ୍ଥୋ-ସାୟାନିନ ନୀଳ, ପାଟଳ ଏବଂ ହରିଦ୍ରା ରଙ୍ଗର ମୂଳ ଉପାଦାନ ।

ପ୍ରୋଟୋପ୍ଲାଜ୍ମସ୍ଥିତ ଜାନ୍ଥୋଫିଲ ଏବଂ କୋଷରସ-ସ୍ଥିତ ଆନ୍ଥୋସାୟାନିନ୍‌ର ସମିଶ୍ରଣରେ ମନୋହର ନାରଙ୍ଗୀ ଏବଂ ଶୋଣିତବର୍ଣ୍ଣ(Scarlet)ର ଉତ୍ପତ୍ତି ।

ବା-ଘ-ନ-ଶ-ହ-ନା-ଲା ଏହି ସପ୍ତରଙ୍ଗ ମିଶ୍ରଣ ଧଳାରଙ୍ଗ ଆଣିଦିଏ । ଧଳାପୁଷ୍ପ ନିକଟକୁ ସାଧାରଣତଃ ମହୁମାଛି ତଥା ଉଡ଼ନ୍ତା କୀଟ ଆସନ୍ତି ନାହିଁ । ଅନ୍ଧାରରେ କିନ୍ତୁ ଉଡ଼ନ୍ତା କୀଟ ପରାଗସଙ୍ଗମ ଘଟାନ୍ତି । ଏଣୁ ଅନ୍ଧାରରେ ଧଳାପୁଷ୍ପ ସ୍ପଷ୍ଟ ଦେଖାଯାଏ ।



ଶ୍ରୀ ନବ ପଟ୍ଟନାୟକ

## ୧ । ଥଣ୍ଡାପାଣି (Ice cold water)

ଖରାଦିନ ଆସିଲା । ପ୍ରାୟ ସମସ୍ତଙ୍କର ମନ ହୁଏ ଥଣ୍ଡା ପାଣି ବା ଥଣ୍ଡା ସର୍ବତ ପିଇବାକୁ । ସହରରେ ବରଫ ମିଳେ କିନ୍ତୁ ମଫସଲରେ କାହିଁ ମିଳେ ନାହିଁ । ଦ୍ୱିପହର ଖରାରେ ଯେତେବେଳେ ଗମ୍‌ଗମ୍‌ ଝାଳ ବହେ, ଭାରି ଶୋଷ ହୁଏ, ମନ ଧାଇଁଯାଏ ଥଣ୍ଡାପାଣି ପାଖକୁ, କିନ୍ତୁ ମିଳେ କେଉଁଠି ? ସବୁଆଡ଼ ତ ଗରମ—ପାଣି ବି ଗରମ—ବାଧ୍ୟ ହୋଇ ଉଷୁମ ପାଣି ପିଇବାକୁ ପଡେ । ଏଇଠି ଗୋଟିଏ ଦୁଇଟି ଉପାୟ ଦିଆଗଲା । ଅଳ୍ପକ୍ଲେଶରେ ପାଣିକୁ ବରଫ ପରି ଥଣ୍ଡା କରି ମନଇଚ୍ଛା ପିଇ ପାରିବେ ।

କ) ଆମୋନିଅମ ନାଇଟ୍ରେଟ (Ammonium Nitrate)—୪
ସୋଡ଼ିଅମ କାର୍ବୋନେଟ (Sodium Carbonate)—୪
ପାଣି— ୬

ଖ) ଆମୋନିଅମ କ୍ଲୋରାଇଡ଼ (Ammonium Cloride)—୪
ପଟାସିଅମ ନାଇଟ୍ରେଟ (ବାଣଖାର—Potassium nitrate)—୪
ପାଣି— ୪

---

ବିଭିନ୍ନ ପ୍ରକାର ବର୍ଣ୍ଣଦାନାହିଁ ଫଳ ଓ ମଞ୍ଜିକୁ ନାନାବିଧ ରଙ୍ଗରେ ଭୂଷିତ କରିଥାଏ । ଫଳ ଭୂପୃଷ୍ଠରେ ପ୍ରକ୍ଷିପ୍ତ ହେବା ଲାଗି ପ୍ରକୃତିର ଏହା ଏକ ବିଚିତ୍ର ଦାନ । ଫଳର ଏହି ଲୋଭନୀୟ ରଙ୍ଗରେ କୀଟ ପତଙ୍ଗ ଆକୃଷ୍ଟ ହୋଇ ତାର ବିକ୍ଷେପର କାରଣ ହୋଇଥାନ୍ତି । ପ୍ରକୃତିର ଲୀଳା ବିଚିତ୍ର । ଏହି ବିଚିତ୍ରତାହିଁ ସୌନ୍ଦର୍ଯ୍ୟ ସୃଷ୍ଟି କରିଥାଏ ।

## ଫୁଲର ରଙ୍ଗ ଉପରେ ଜଳବାୟୁର ପ୍ରଭାବ

ଜଳବାୟୁ ଏବଂ ସୂର୍ଯ୍ୟକିରଣର ପ୍ରଗାଢ଼ତା ପୁଷ୍ପର ରଙ୍ଗ ଉପରେ ପ୍ରଚୁର ପ୍ରଭାବ ପକାଇଥାଏ । ପଳାଶ ଏବଂ ଗୋଲମୋହରର ପୁଷ୍ପର ଉଜ୍ଜ୍ୱଳ ଲୋହିତ ଓ ନାରଙ୍ଗବର୍ଣ୍ଣ ଗ୍ରୀଷ୍ମମଣ୍ଡଳୀୟ ସୂର୍ଯ୍ୟକିରଣ ଦ୍ୱାରା କୋମଳତା ପ୍ରାପ୍ତ ହୋଇଥାଏ । ଇଂଲଣ୍ଡ ଓ ଜର୍ମାନୀ ପରି ଶୀତପ୍ରଧାନ ଜଳବାୟୁରେ ଏହିପରି ଉଜ୍ଜ୍ୱଳ ରଙ୍ଗ ଅତି ରୁକ୍ଷ ଦେଖାଯିବ । ଗ୍ରୀଷ୍ମମଣ୍ଡଳୀୟ ସୂର୍ଯ୍ୟାଲୋକ ହରିତ୍ ରଙ୍ଗାଧିକ୍ୟ ହୋଇଥିବାରୁ ଆଖି ଝଲସାଇ ଦେଉଥିବା ଲୋହିତ ରଙ୍ଗକୁ କୋମଳ କରି ପକାଏ । ଋଷିଆ, ନରୱେ ଓ ସୁଇଡେନ ପ୍ରଭୃତି ବରଫାଚ୍ଛନ୍ନ ଅଞ୍ଚଳରେ ସୂର୍ଯ୍ୟକିରଣ ବରଫରେ ପ୍ରତିବିମ୍ବିତ ହୋଇଯାଏ । ତେଣୁ କୋମଳ ଲୋହିତ ଓ ନାରଙ୍ଗ ବର୍ଣ୍ଣ ଏହି ଶୀତପ୍ରଧାନ ଅଞ୍ଚଳର ପ୍ରିୟତମ ବର୍ଣ୍ଣ ହୋଇଥାଏ । ତିବ୍ବତ ଅତି ଶୀତପ୍ରଧାନ ଅଞ୍ଚଳ । ତେଣୁ ଲାମା ଓ ଅନ୍ୟାନ୍ୟ ଧର୍ମ ସମ୍ପ୍ରଦାୟର ଲୋକେ ଉକ୍ତ ଲୋହିତ ବର୍ଣ୍ଣର ପୋଷାକ ପରିଚ୍ଛଦ ପିନ୍ଧନ୍ତି । ମରୁଭୂମି ଅଞ୍ଚଳରେ ବାସ କରୁଥିବା ଆରବମାନେ ସବୁଜ ବର୍ଣ୍ଣ ପୋଷାକ ପସନ୍ଦ କରନ୍ତି । ସବୁଜବର୍ଣ୍ଣ ଚକ୍ଷୁକୁ ଶୀତଳ ଓ ପ୍ରୀତିଦାୟକ ହୋଇଥାଏ । ଶୀତପ୍ରଧାନ ଦେଶର ଲୋକମାନେ ଲାଲ ଓ ନାରଙ୍ଗବର୍ଣ୍ଣ ପୁଷ୍ପରେ ସେମାନଙ୍କର ଗୃହ ଚତୁଃପାର୍ଶ୍ୱ ସଜାଇବାକୁ ଭଲପାନ୍ତି ।

---

ଗୋଟିଏ ମାଟି ପାତ୍ରରେ ମାପ ଅନୁଯାୟୀ ଆମୋନିଅମ ନାଇଟ୍ରେଟ ଓ ସୋଡ଼ା କାର୍ବୋନେଟ ପାଣିରେ ଗୋଳାଇ ରଖ ଏବଂ ଯେଉଁ ପାଣି ପିଇବା ପାଇଁ ଦରକାର କାଚ ଗ୍ଲାସରେ ଭର୍ତ୍ତି ସେଇ ସଲ୍ୟୁସନ (Solution) ରେ କିଛି କିଛି ସମୟ ବୁଡ଼ାଇ ରଖ । ୫।୧୦ ମିନିଟ ଭିତରେ ଗ୍ଲାସର ପାଣି ବରଫପରି ଥଣ୍ଡା ହୋଇଯିବ । ଏଇ ପାଣିରେ ସର୍ବତ କର ବା ସର୍ବତ ଗ୍ଲାସକୁ ଏଇ ସଲ୍ୟୁସନରେ ବୁଡ଼ାଇ ରଖି ଦିଅ ।

## ୨ । ଶିରା ବା ଶିରପ ( Syrup )

ସାଦା ଶିରା ତିଆରି କରି ପାରିଲେ ଯେ କୌଣସି ପ୍ରକାରର ସିରପ ତିଆରି କରାଯାଇ ପାରିବ । ବଜାରରେ ରୋଜ ଅରେଞ୍ଜ, ଲେମନ, ପାଇନ ଆପଲ, ଗ୍ରିନ୍ ମାଙ୍ଗୋ, ପୋଦନା ଇତ୍ୟାଦି ଅନେକ ପ୍ରକାରର ଫ୍ରୁଟ ସିରପ ମିଳେ । ଏ ସବୁର ମୂଳରେ ସାଦାସିରପ ଓ ତାହିଁରେ ଫଳର ବର୍ଣ୍ଣ ଅନୁଯାୟୀ ରଙ୍ଗ ଓ ଫଳର ଗନ୍ଧ (Essence) ମିଶି ଏ ସବୁର ଭିନ୍ନ ଭିନ୍ନ ନାମ ସୃଷ୍ଟି କରିଥାଏ ।

ସାଦା ସିରପ୍ ( Simple Syrup)
ଦାନାଦାର ଚିନି— ୮ ସ୍ୟ
ସଫା ପାଣି— ୫ସ୍ୟ

ଚିନିରେ ପାଣି ଦେଇ କଡ଼େଇକୁ ଚୁଲିରେ ବସାଅ । ପାଣି ଫୁଟିଲେ ଚିନି ମିଶିଯିବ ଏବଂ କିଛି ସମୟ ପରେ ଫେଣ ଉଦ୍ଭୂତ ଉଠିବ । ଏଇ ସମୟରେ ସାମାନ୍ୟ ଦୁଧ ପାଣିରେ ଗୋଳାଇ ଅଳ୍ପ ଅଳ୍ପ ଢାଳ । ଚିନିର ମଇଳା ଫେଣ ସଂଗେ ଭାସି ଉଠିବ । ଜାଲିଚାଟୁଦ୍ୱାରା ମଇଳା ସବୁ ଛାଣି ଫୋପାଡ଼ିଦିଅ । ପୁଣି ଦୁଧ ଗୋଳା ପାଣି ଢାଳ । ଏଇପରି ମଇଳା ସବୁ ବାହାରି ଗଲେ ସିରପ ସ୍ୱଚ୍ଛ ଏବଂ ପରିଷ୍କାର ହେବ । ଶିରା ବହଳା ହୋଇ ଆସିଲେ ଚୁଲିରୁ ଓହ୍ଲାଇ ନେଇ ରଖ । ଏଇ ସାଦା ସିରପକୁ ଯେ କୌଣସି ଫ୍ରୁଟସିରପ କରାଯାଇପାରେ । ଏକ ପାଉଣ୍ଡ ସିରପରେ ୧୨ ଗ୍ରେନ୍ ସାଇଟ୍ରିକ୍ ଏସିଡ୍ (acid citric) ଏବଂ ରୋଜ ସିରପ କରିବାକୁ ହେଲେ ଏସେନ୍ସ ରୋଜ ( Essence Rose) ଓ ଗୋଲାପି ରଙ୍ଗ ( Liquid edible rose colour ) ମିଶାଅ । ଲେମନ ଓ ଅରେଞ୍ଜ ସିରପ ପାଇଁ ଏସେନ୍ସ ଲେମନ ବା ଏସେନ୍ସ ଅରେଞ୍ଜ ( Essence Lemon or Essence Orange) ଓ ଲେମ୍ବୁ ବା କମଳା ରଙ୍ଗ ମିଶାଅ । ଖୋଜିଲେ ଅନେକ ଫଳର ଏସେନ୍ସ ଓ ରଙ୍ଗ ପାଇ ପାରିବେ । କିଣିଲେ ବୋତଲେ ସିରପର ଦାମ ଦୁଇଟଙ୍କାରୁ କମ୍ ନୁହେଁ କିନ୍ତୁ ତିଆରି କଲେ ଟଙ୍କାକରୁ କମ୍ ହେବ ନିଶ୍ଚୟ ।

## ୩ । ଫ୍ରୁଟ ଏସେନ୍ସ ( Fruit Essence)

କ) ଏସେନ୍ସ ରୋଜ କରିବା ପାଇଁ ଭଲ ନାଲି ରଙ୍ଗର ସଜ ଗୋଲାପ ଫୁଲ ସଂଗ୍ରହ କରି ପାଖୁଡ଼ାତକ ଅଲଗା କରିନିଅ । ଗୋଟିଏ ଶିଶିରେ ୪ ତୋଳା ଓଜନର ପାଖୁଡ଼ା ସଂଗେ ରେକ୍‌ଟିଫାଏଡ଼ ସ୍ପିରିଟ (Rectified spirit) ୩ । ୪ ଅଉନ୍ସ ମିଶାଇ ଭଲ ଭାବେ ଠିପି ବନ୍ଦ କରି କିଛି ଦିନ ରଖ । ମଝିରେ ମଝିରେ ଶିଶିଟିକୁ ହଲାଇ ନେଉଥାଅ । ଏଇ ହେଲା ଏସେନ୍ସ ରୋଜ । ଏହାକୁ ସିରପ ବା ଯେ କୌଣସି ଖାଦ୍ୟ ସଂଗେ ମିଶାଇ ବ୍ୟବହାର କରିପାର ।

ଖ) ଏସେନ୍ସ ଅରେଞ୍ଜ (Essence Orange)
ପାଚିଲା କମଳା ଚୋପା ୪ ଅଉନ୍ସ ।
ରେକ୍‌ଟିଫାଏଡ଼ ସ୍ପିରିଟ୍ ୮ ,,
ପାଣି ୮ ,,
ଏକ ସପ୍ତାହ କାଳ ବୋତଲରେ ବନ୍ଦ କରି ରଖ ।

ଗ) ଏସେନ୍ସ ଲେମନ ( Essence Lemon)
ଅଧ ପାଉଣ୍ଡେ ଲେମ୍ବୁ ଚୋପା ତିନିସେର ଗରମ ପାଣିରେ ପକାଇ ଏକଘଣ୍ଟା ପରେ ପାଣିତକ ଛାଣି ନେଇ ସିଝାଅ । ପାଣି ଏକ ସେର ବା କିଛି କମ୍ ହୋଇ ଆସିଲେ ସ୍ପିରିଟ ଅଫ ଓ୍ୱାଇନ୍ ( Spirit of wine) ମିଶାଅ ।

ଘ) ଏସେନ୍ସ ଜିଞ୍ଜର (Essence Ginger)
ଅଦାଗୁଣ୍ଡ — ୮
ରେକ୍ଟିଫାଏଡ ସ୍ପିରିଟ—୧୬

[ ଅନ୍ୟାନ୍ୟ କେତେକ ଫର୍ମୁଲା ଆସନ୍ତା ସଂଖ୍ୟାରେ ପ୍ରକାଶ ପାଇବ । ]



# ଯନ୍ତ୍ର-ଯୋଗୀ (D.M.E.)

ଥରେ ନିଉୟର୍କ ଆନ୍ତର୍ଜାତିକ ବିମାନ କେନ୍ଦ୍ର ଆଡ଼କୁ ଆସୁଥିବା ଏକ ବିମାନର ପାଇଲଟ ନିଜର ଅବସ୍ଥିତି ନିର୍ଣ୍ଣୟ କରିବା ଉଦ୍ଦେଶ୍ୟରେ ବିମାନକେନ୍ଦ୍ରର ରଡ଼ାର ଅଫିସକୁ ପଚାରିଲେ, "ଆପଣଙ୍କ ଦୃଷ୍ଟି-ପରିସର ମଧ୍ୟରେ ମତେ ପାଉଛନ୍ତି ?"

"ହିଁ" ରଡ଼ାର ଉତ୍ତର ଦେଲା ।

"ମୁଁ ମୋର ଡି.ଏମ୍.ଇ. ଯନ୍ତ୍ର ମିଳାଇବାକୁ ଚାହେଁ । ଆପଣଙ୍କ ହିସାବରେ ମୁଁ କେତେ ଦୂରରେ ଅଛି ?"

"ତିରିଶ ମାଇଲ" ରଡ଼ାର ଜଣାଇ ଦେଲା ।

ପାଇଲଟ କହିଲେ, "ଏ ତ ବଡ଼ ମୁସ୍କିଲ କଥା ! ମୋ ଡି.ଏମ୍.ଇ. କହୁଛି ୨୯୫ ମାଇଲ ।"

ମନଟା ତାଙ୍କର ବିଗିଡ଼ିଗଲା । ଯନ୍ତ୍ରଟା ତେବେ ଠିକ୍ ଦୂରତା ଜଣାଉଛି ଆଉ କଣ ? କେତେକ ମିନିଟ ପରେ ସେ ପୁଣି ପଚାରିଲେ, "ବର୍ତ୍ତମାନ କେତେ ଦୂରରେ ?"

ରଡ଼ାର କହିଲା, "କୋଡ଼ିଏ ମାଇଲ ।"

ପାଇଲଟ ତାଙ୍କ ଡି.ଏମ୍.ଇ.କୁ ଚାହିଁ ମନେ ମନେ ଚିଡ଼ି ଉଠିଲେ । ତାଙ୍କ ଯନ୍ତ୍ରରେ ଦିଶୁଛି ୧୯୫ ମାଇଲ !

ଏଭଳି ଯନ୍ତ୍ର ରଖି ଲାଭ କଣ ? ସେ ଏହିପରି ବ୍ୟସ୍ତ ହୋଇ ଭାବୁଥିବା ବେଳେ ତାଙ୍କର ହଠାତ୍ ମନେ ପଡ଼ିଗଲା—ନିଉୟର୍କ ଆନ୍ତର୍ଜାତିକ ବିମାନ ଘାଟିଠାରୁ D.M.E. ଷ୍ଟେସନ ମଧ୍ୟରେ ଅଧମାଇଲଏ ଦୂର ତଫାତ୍ ।

ଏହି D.M.E. ବା Distance Measuring Equipment ଆଧୁନିକ ଯୁଗର ଏକ ବିଚିତ୍ର ଉଦ୍ଭାବନ । ଏହାକୁ ବିମାନଚାଳକର ଏକ ପରମ ବନ୍ଧୁ ବୋଲି କୁହାଯାଉଛି । ଯଦିଓ ନିରପତ୍ତା ଦୃଷ୍ଟିରୁ ଆଜିକାଲି ପ୍ରତ୍ୟେକ ପାଇଲଟଙ୍କୁ ପ୍ରାୟ ଡଜନେ ଖଣ୍ଡେ ଯନ୍ତ୍ରପାତିର ସାହାଯ୍ୟ ନେବାକୁ ହେଉଛି ତଥାପି ଖରାପପାଗ ହେଲେ ସେ ପ୍ରକୃତରେ ନିଜକୁ ସଙ୍କଟାପନ୍ନ ମନେ କରେ । ସେତେବେଳେ ପୃଥିବୀ ପୃଷ୍ଠର ଠିକ୍ କେଉଁ ସିଧା ସେ ଅଛି, ତାହା ଜାଣିବା ତା ପକ୍ଷରେ ସମ୍ଭବ ହୁଏ ନାହିଁ । ସେ କେବଳ ଜାଣେ, ଅମୁକ ଘାଟିଠାରୁ ଏତିକ ସମୟ ଉଡ଼ାବାଟ ବ୍ୟବଧାନରେ ସେ ଅଛି ।

ପାଇଲଟଙ୍କୁ ଏହି ବିପଦରେ ସାହାଯ୍ୟ କରିବା ପାଇଁ ଗୋଟିଏ ନୂତନ ଯନ୍ତ୍ର ଉଦ୍ଭାବିତ ହୋଇଅଛି । ଏହାର ସାଙ୍କେତିକ ନାମ D.M.E. ଅର୍ଥାତ୍ ଦୂରତା ପରିମାପକ । ଏହା ଗୋଟିଏ ରେଡିଓ ସେଟ୍‌ପରି ଯନ୍ତ୍ର । ୩୩ ପାଉଣ୍ଡ ଓଜନ, ୧ ଘନଫୁଟ ସ୍ଥାନରୁ ଟିକିଏ ବେଶୀ ସ୍ଥାନ ଅଧିକାର କରେ, ମାତ୍ର ଏହାର ମୂଲ୍ୟ ଖୁବ୍ ବେଶୀ । ଗୋଟିଏ ଯନ୍ତ୍ରର ଦାମ୍ ପ୍ରାୟ ୧୮ ହଜାର ଟଙ୍କା ଏବଂ ଏହାକୁ ଚାଲୁ ଅବସ୍ଥାରେ ଏବଂ ନିର୍ଭୁଲ ରଖିବାପାଇଁ ପ୍ରତ୍ୟେକ କମ୍ପାନୀକୁ ୨୨ ହଜାର ଟଙ୍କାର ଅଧିକା ଯନ୍ତ୍ରପାତି ରଖିବାକୁ ପଡ଼େ ।

ଏହି ଯନ୍ତ୍ରଟି କିପରି କାର୍ଯ୍ୟକରେ ତାହା ବାସ୍ତବିକ ଆଶ୍ଚର୍ଯ୍ୟଜନକ । ଏଥିରେ ଘଣ୍ଟା ମୁହଁ ପରି ଗୋଟିଏ ମୁହଁ ଏବଂ ସେଥିରେ ଗୋଟିଏ ମାତ୍ର କଣ୍ଟା ଅଛି । ରେଡିଓ କଣ୍ଟାକୁ ଯେପରି ଆମେ ଷ୍ଟେସନ ସଙ୍ଗେ 'ଟିଉନ୍' କରୁ ଅର୍ଥାତ୍ ମିଳାଇ ନେଉ, ସେହିପରି ପାଇଲଟ ତା ଡି. ଏମ୍. ଇ ଯନ୍ତ୍ରଟିକୁ କୌଣସି ବିମାନ କେନ୍ଦ୍ରସଙ୍ଗେ ଟିଉନ୍ କରିନେଇ ସେଠାକୁ ଦୁଇଟି ବୈଦ୍ୟୁତିକ ସ୍ପନ୍ଦନ ପଠାଏ । ଏହି ସ୍ପନ୍ଦନର ଦୈର୍ଘ୍ୟ ଏକ ସେକେଣ୍ଡର ୨୫ ଲକ୍ଷଭାଗରୁ ଏକଭାଗ । ଭୂପୃଷ୍ଠସ୍ଥ ଷ୍ଟେସନ ଏହି ସ୍ପନ୍ଦନର ଉତ୍ପତ୍ତିସ୍ଥାନକୁ ଠାବ କରି ଉତ୍ତର ଦିଏ । ଏହି ଉତ୍ତର ପାଇବାମାତ୍ରେ ବିମାନସ୍ଥ ଡି. ଏମ୍. ଇ ଯନ୍ତ୍ର ତାକୁ ପଢ଼ିନିଏ ଏବଂ କଣ୍ଟା ସାହାଯ୍ୟରେ ସେହି ସଂଖ୍ୟାଟିକୁ ନିର୍ଦ୍ଦେଶ କରି ଦେଖାଇ ଦିଏ ।

ଆମେ ଯେପରି ଦୂରରୁ ଆସୁଥିବା ଶବ୍ଦକୁ ଶୁଣିବାକୁ କାନ ଡେରୁ, ଏବଂ ମନରେ ସନ୍ଦେହ ହେଲେ ଖୁବ୍ ସାବଧାନତା ସହିତ କାନଡେରି ଶେଷରେ ଠିକ୍

ଶବ୍ଦଟିକୁ ଧରିନେଇ, ଏହି ଯନ୍ତ୍ରଟି ଠିକ୍ ସେହିପରି ଶୁଣିବାକୁ ଚେଷ୍ଟାକରେ । ତାର କଣ୍ଟାଟି ଯନ୍ତ୍ର ମୁହଁରେ ଉପର ତଳ ବୁଲି ବୁଲି କଣ କଣ ଉତ୍ତର ଆସୁଛି ତାକୁ ଧରିବାକୁ ଚେଷ୍ଟା କରୁଥାଏ । ସତେ ଯେପରି ସେ ସ୍ପଷ୍ଟ ଭାବରେ ଧରି ପାରୁନାହିଁ । ବେଳେ ବେଳେ ସେ ସନ୍ଦିଗ୍ଧ ହୋଇ ଶୂନ୍ୟ (zero) ସ୍ଥାନକୁ ଫେରି ଆସେ । କିନ୍ତୁ ପୁଣି ସହ୍‌ସା ଉଠିଯାଇ ଗୋଟିଏ ସ୍ଥାନରେ ସ୍ଥିର ଭାବରେ ଲାଗିରହେ, କାରଣ ଏଥର ସେ ଠିକ୍ ଉତ୍ତରଟିକୁ ଧରିପାରିଛି ।

ଏହି ଯନ୍ତ୍ରର ସ୍ମରଣ ଶକ୍ତି ମଧ୍ୟ ଅଛି । ଭୂପୃଷ୍ଠସ୍ଥ କେନ୍ଦ୍ରରୁ ଆସୁଥିବା ଉତ୍ତରକୁ ଧରୁଥିବାବେଳେ ମଝିରେ ଯଦି ସେଇବାଟ ଦେଇ ଆଉ ଗୋଟିଏ ବିମାନ ଉଡ଼ି-ଯାଏ ଏବଂ ତଦ୍ଦ୍ୱାରା ଯୋଗାଯୋଗ ସାମୟିକ ବିଚ୍ଛିନ୍ନ ହୁଏ, ଉ. ଏମ୍. ଇ ପୂର୍ବରୁ ଧରିଥିବା ଉତ୍ତରକୁ ଭୁଲିଯାଏ ନାହିଁ । ୧୫ ସେକେଣ୍ଡ ପର୍ଯ୍ୟନ୍ତ ଏହା ଗୋଟିଏ ଉତ୍ତରକୁ ମନେ ରଖିପାରେ ।

ଏହି ଯନ୍ତ୍ରଟି ଆକାରରେ ଛୋଟ ହେଲେ ମଧ୍ୟ ଏଥିରେ ବହୁ ସୂକ୍ଷ୍ମାତିସୂକ୍ଷ୍ମ କଳକବ୍‌ଜା ଖଞ୍ଜାଯାଇଛି । ମାଇଲ ମାଇଲ ଲମ୍ବିର ତାର ଓ ଅନେକଗୁଡ଼ିଏ ନଳୀ ଏଥିରେ ରହିଛି । କିନ୍ତୁ ଅସଜ ହୋଇଗଲେ ଅଳ୍ପ କେତେ ସେକେଣ୍ଡ ମଧ୍ୟରେ ଏହାକୁ ସଜାଡ଼ି ହୁଏ । ସବୁଠାରୁ ଆଶ୍ଚର୍ଯ୍ୟଜନକ ହେଉଛି ଏହାର ଟାଣ ଜୀବନ । ° ଡିଗ୍ରୀ ଠାରୁ ୪° ଡିଗ୍ରୀ ତଳ ଥଣ୍ଡାରେ ବା ° ଡିଗ୍ରୀ ଉପରେ ୧୫° ଡିଗ୍ରୀ ଉତ୍ତାପରେ ଏହା ଯେପରି ଠିକ୍ ଠିକ୍ କାମ ଦିଏ, ୩° ହଜାର ଫୁଟ ଉଚ୍ଚ ପତଳା ବାୟୁ ଭିତରେ ଥାଇ ବା ୧° ଫୁଟ ଉଚ୍ଚରୁ କଙ୍କ୍ରିଟ ଚଟାଣ ଉପରେ କଚଡ଼ି ପଡ଼ି ମଧ୍ୟ ଏହା ନିର୍ବିକାର ଯୋଗୀଙ୍କ ଭଳି ନିର୍ଭୁଲ ଭାବରେ କର୍ତ୍ତବ୍ୟ ସମ୍ପାଦନ କରିପାରେ ।

# ଅନୈତିକ ପ୍ରବୃତ୍ତି କିପରି ବଢୁଛି

ସ୍ୱାମୀ ରାମପ୍ରେମୀ

## ଅଶ୍ଳୀଳ ସାହିତ୍ୟ—

ଆଜକାଲି ପତ୍ର ପତ୍ରିକାମାନଙ୍କରେ ଯେଉଁ ପ୍ରବନ୍ଧ, କାହାଣୀ, କବିତା ଇତ୍ୟାଦି ଦେଖିବାକୁ ମିଳେ ସେଥିରୁ ପ୍ରମାଣ ମିଳେ ଯେପରି ସମସ୍ତ ମର୍ଯ୍ୟାଦା, ସମସ୍ତ ଶିଷ୍ଟାଚାର ନଷ୍ଟ କରିବା ଆଜକାଲିକା ଲେଖକଙ୍କର ପରମ ପୁରୁଷାର୍ଥ ହୋଇ ଗଲାଣି । ଖୁବ୍ ଗୌରବର ସହିତ ଆଜକାଲିକା ଲେଖକମାନେ ପାଶବିକ ପ୍ରେମର ନଗ୍ନଚିତ୍ର ବର୍ଣ୍ଣନ କରନ୍ତି । ପ୍ରାଚୀନ ଆଦର୍ଶ ଚରିତ୍ରମାନଙ୍କୁ ପରିହାସ କରି ଶିଷ୍ଟାଚାର ବିରୁଦ୍ଧରେ ପ୍ରଚାର କରନ୍ତି । ସେମାନେ ଯେ ଏହାଦ୍ୱାରା ସୁକୋମଳ-ମତି ବାଳକବାଳିକାମାନଙ୍କୁ ଅନ୍ଧକାର ମଧ୍ୟକୁ ଠେଲି ଦେଉଛନ୍ତି ସେ କଥା ଆଦୌ ଭାବୁ ନାହାନ୍ତି; ବରଂ ନିଜର ଉଚ୍ଛୃଙ୍ଖଳ ଯୁକ୍ତି ସମର୍ଥନ କରିବାରେ ଗର୍ବ ଅନୁଭବ କରୁଛନ୍ତି । ଲେଖକମାନେ ଏପରି ନଗ୍ନ ଅଶ୍ଳୀଳ ଚିତ୍ରର ବର୍ଣ୍ଣନା କରନ୍ତି ଯାହା ନିଜେ ସେମାନେ ଅନ୍ୟ ଆଗରେ ପାଠ କରିବାକୁ ମଧ୍ୟ ଲଜ୍ଜାବୋଧ କରିବେ । ଏପରି ସାହିତ୍ୟ ଯେ ନିଜର ପୁତ୍ର, କନ୍ୟା ବା ଭଗିନୀ ହାତରେ ପଡ଼ିବ ଏ କଥା କଣ ଲେଖକ-ମାନେ ଜାଣନ୍ତି ନାହିଁ ? ଏପରି ସାହିତ୍ୟର ପରିଣାମ ଅନାଚାର ନୁହେଁ ତ ଆଉ କଣ ?

ବାଳକମାନଙ୍କର ମନ ଓ ସେମାନଙ୍କ ଶରୀରର ଉପାଦାନଗୁଡ଼ିକ ଅପରିପକ୍ୱ ଥାଆନ୍ତି । ଏହି ଅବ-ସ୍ଥାରେ ବ୍ରହ୍ମଚର୍ଯ୍ୟ ପାଳନ ନ କଲେ ସେମାନଙ୍କର ଶରୀର ମନ ଉଭୟ କ୍ଷୀଣ ହୋଇ ପଡ଼ନ୍ତି । ଶିକ୍ଷାହିଁ ବାଳକମାନଙ୍କର ଚରିତ୍ର ନିର୍ମାଣ କରେ । ଆଜିର ସାହିତ୍ୟିକ ଓ ପତ୍ରପତ୍ରିକାମାନଙ୍କର ପ୍ରକାଶକ ଯେଉଁ

ଶିକ୍ଷା ଦେଉ ଅଛନ୍ତି, ତାହାର ପ୍ରଭାବ କଣ ହେବ ? ଏପରି ଅଶ୍ଳୀଳ, ନଗ୍ନ ସାହିତ୍ୟ ପଢ଼ି ଆମର ଛାତ୍ରଛାତ୍ରୀ ରୋଗୀ, ଦୁର୍ବଳ, ନିସ୍ତେଜ ଏବଂ ଚରିତ୍ରହୀନ ହୋଇ ପଡ଼ୁଛନ୍ତି ।

ଆଜକାଲିକାର ପ୍ରବନ୍ଧ, କବିତା ବା କାହାଣୀ ସହିତ ଯେଉଁ ଚିତ୍ର ଛପା ଯାଉଛି ତାହା ପ୍ରାୟ ବାସନାକୁ ଉତ୍ତେଜିତ କରେ । ଅର୍ଦ୍ଧନଗ୍ନ ନାରୀର ଚିତ୍ର ବ୍ୟତୀତ କଳାର ବିକାଶପାଇଁ ଯତେ ଯେପରି ଅନ୍ୟ କୌଣସି ଆଶ୍ରୟ ଲେଖକ ପାଇଁ ନାହିଁ ! ଏହା ସହିତ ସିନେମାର ନଟନଟୀମାନଙ୍କର ଚିତ୍ର ମଧ୍ଯ ପ୍ରକାଶିତ ହୁଏ । ଏଣୁ ଛାତ୍ରଛାତ୍ରୀମାନଙ୍କୁ ଏଭଳି ଅବାଞ୍ଛନୀୟ ଅପସାହିତ୍ୟ ହସ୍ତରୁ ରକ୍ଷା କରିବା ସର୍ବଥା ଆବଶ୍ୟକ । କାମୋତ୍ତେଜନାପୂର୍ଣ୍ଣ ଲେଖା, କାହାଣୀ, ପଦ୍ୟ, ଉପନ୍ୟାସ ଇତ୍ୟାଦି ବିଷଠାରୁ ମଧ୍ଯ ଅଧିକ ତୀବ୍ର ଅଟେ । ଏହାଦ୍ଵାରା କୋମଳମତି ବାଳକବାଳିକା-ମାନଙ୍କର ମନ ମଳିନ ଓ ଜୀବନ ନଷ୍ଟ ହୋଇଯାଏ । ଏହିପରି ତଥାକଥିତ ପତ୍ରପତ୍ରିକାମାନ ଛାତ୍ରମାନଙ୍କର ନୈତିକ ପତନ ପାଇଁ ଦାୟୀ ।

ଯେଉଁ ପୁସ୍ତକ ବା ପତ୍ରିକାମାନଙ୍କରେ ଅଶ୍ଳୀଳ ଚିତ୍ର, ଅଶ୍ଳୀଳ ବିଜ୍ଞାପନ, ସିନେମା ବିଜ୍ଞାପନ ପ୍ରଭୃତି ଦିଆଯାଏ, ଯେଉଁଥିରେ କାମପ୍ରବୃତ୍ତି, ଅସଦାଚାର, ଅସତ୍ୟ ଏବଂ ହିଂସାଦ୍ୱେଷ ପ୍ରଭୃତି ଉତ୍ତେଜିତ କରୁଥିବା କାହାଣୀ, କବିତା ନାଟକ ପ୍ରଭୃତି ଥାଏ, ଯେଉଁଥିରେ ଧର୍ମ, ଈଶ୍ୱର, ସନ୍ଥ ଓ ମହାପୁରୁଷ-ମାନଙ୍କର ଚରିତ୍ରର ହୀନ ଅପଚିତ୍ରଣ କରାଯାଇଥାଏ, ସେପରି ପୁସ୍ତକ ପାଠଦ୍ୱାରା ବାଳକବାଳିକା କେବେହେଁ ସୁସ୍ଥ, ସଦାଚାରୀ, ମନସ୍ୱୀ ହୋଇପାରିବେ ନାହିଁ । ଏଣୁ ପ୍ରତ୍ୟେକ ବ୍ରହ୍ମଚାରୀ, ବାଳକବାଳିକା, ଯୁବକ ଯୁବତୀ ଏପରି ସାହିତ୍ୟରୁ ଦୂରରେ ରହିବା ଉଚିତ ।

ଯେଉଁ ଛାତ୍ରମାନେ ସରଳ, ଈଶ୍ୱରବିଶ୍ୱାସୀ ଓ ଧର୍ମ ଗ୍ରନ୍ଥ ପାଠ କରନ୍ତି, ସେମାନେ ଛାତ୍ର ସମାଜରେ ଉପହାସାସ୍ପଦ । କିନ୍ତୁ ଯେଉଁମାନେ ଈଶ୍ୱରନିନ୍ଦୁକ, ଧର୍ମନିନ୍ଦୁକ, ଅଧ୍ୟାପକମାନଙ୍କର ଅବାଧ୍ୟ, ଅଶ୍ଳୀଳ ବାକ୍ୟାଳାପୀ, ସେହିମାନେହିଁ ସହପାଠୀମାନଙ୍କର ଆଦରଣୀୟ । କି ନୈତିକ ଦୁର୍ଗତି !

## ସିନେମା—

ସିନେମା ବର୍ତ୍ତମାନ ଯୁଗର ଏକ ଅଭିଶାପ । ତାହା ମାନବ-କୁଳର ହଜାର ହଜାର କୁମାରୀଙ୍କୁ ନର୍ତ୍ତକୀ, ବେଶ୍ୟା ତଥା ଯୁବକମାନଙ୍କୁ ଅମିତବ୍ୟୟୀ ଓ ବ୍ୟଭିଚାରୀ କରି ଦେଲାଣି । ସିନେମା ନିର୍ମାତାମାନଙ୍କର ଲକ୍ଷ୍ୟ ସାମାଜିକ ବା ନୈତିକ ଗଠନ ନୁହେଁ । ତାଙ୍କର ପ୍ରଧାନ ଲକ୍ଷ୍ୟ ଅର୍ଥୋପାର୍ଜ୍ଜନ ।

ସିନେମା ଦ୍ୱାରା ଲୋକମାନେ ଚୋରିବିଦ୍ୟାର ନୂତନ ନୂତନ କଳା, ଜାଲ, ଡକାୟତି, ମଦ୍ୟପାନ ଓ ବ୍ୟଭିଚାର ଆଦି ଅସଦ୍-ଗୁଣ ଶିକ୍ଷା କରନ୍ତି । ସିନେମାରେ ପ୍ରାଚୀନ କଳାର ଆଦର୍ଶ ପରମ୍ପରାକୁ ଘୃଣା କରାଯାଇଥାଏ । ପ୍ରତ୍ୟେକ ଚିତ୍ରପଟରେ ଭୌତିକ ତଥା ଶାରୀରିକ ସୌନ୍ଦର୍ଯ୍ୟ ସଙ୍ଗେ ସଙ୍ଗେ ଇନ୍ଦ୍ରିୟ ବୃତ୍ତିକୁ ଉତ୍ତେଜିତ କରିବା ଭଳି, ଉଦ୍ଦାମ କାମବାସନାକୁ ପ୍ରଦୀପ୍ତ କରିବା ଭଳି ଛବି ପୂରି ରହିଥାଏ, ଯାହାର ପ୍ରଭାବ ଦର୍ଶକମାନଙ୍କ ମନରେ ଗଭୀର ରେଖାପାତ କରେ ।

ସିନେମା ସମ୍ବନ୍ଧରେ ବିନୋବା ଭାବେ କହନ୍ତି—

"ପୁରାତନ କାଳର ଲୋକମାନେ ସାରାଦିନର କର୍ମକାର୍ଯ୍ୟପରେ ସନ୍ଧ୍ୟାରେ ଭଜନ, କୀର୍ତ୍ତନ ଓ ଈଶ୍ୱରଙ୍କର ନାମ ଜପ ଆଦି କରୁଥିଲେ । ସେମାନଙ୍କର ଆଚାର ବିଚାର ଶୁଦ୍ଧ ଥିଲା । ସିନେମାଦ୍ୱାରା ଆଜ ଠିକ୍ ତାର ବିପରୀତ ପରିଣାମ ଦେଖାଯାଏ ।"

ଚକ୍ରବର୍ତ୍ତୀ ଶ୍ରୀ ରାଜଗୋପାଳାଚାରୀ କହିଛନ୍ତି—

"ସିନେମା ନିର୍ମାତାମାନେ ଗରିବଙ୍କର ଝାଳବୁହା ଧନ ଶୋଷଣ କରିଥାନ୍ତି ଏବଂ ଜନତାକୁ ଚରିତ୍ରଭ୍ରଷ୍ଟ କରିଥାନ୍ତି । ସେମାନେ ମନୁଷ୍ୟର ଦୁର୍ବଳତା ଜାଣନ୍ତି, ଏଣୁ ଅଶ୍ଳୀଳ ଚିତ୍ର ପ୍ରଦର୍ଶନ କରି ଲୋକମାନଙ୍କର ନୀଚ ପ୍ରବୃତ୍ତିଗୁଡ଼ିକୁ ଉତ୍ତେଜିତ କରି ତାଙ୍କୁ ନରକଗାମୀ କରାନ୍ତି ।"



ଡାକଟିକଟ ସଂଗ୍ରହ

# ପଞ୍ଚବାର୍ଷିକ ଡାକଟିକଟ

ଶ୍ରୀ ରଘୁନାଥ ପାଢ଼ି ଶର୍ମ୍ମା

ବର୍ତ୍ତମାନର ପଞ୍ଚବାର୍ଷିକ ଡାକଟିକଟ ଜାନୁଆରି ୨୬ ତାରିଖଠାରୁ ଦେଶରେ ପ୍ରଚଳିତ ହେଉଛି । ଏଥିର ମୋଟ ଡାକଟିକଟ ସଂଖ୍ୟା ୧୮ । ପ୍ରଜାତାନ୍ତ୍ରିକ ସିରିଜ୍‌ରେ ଥିବା ଚଉଦ ପଇସା, ଦଶପଇସା ଓ ପନ୍ଦର ଟଙ୍କିଆ ଡାକଟିକଟ ସବୁ ଏହି ସିରିଜ୍‌ରେ ବାଦ ଦିଆ ଯାଇଛି । ଏହି ଡାକଟିକଟଗୁଡ଼ିକରେ ପୂର୍ବର ଡାକଟିକଟ ଭଳିଆ ଇଂରାଜୀରେ ଡାକଟିକଟ ଚିତ୍ରର ବିବରଣୀ ଦିଆ ନ ଯାଇ ହିନ୍ଦିଲିପିରେ ଦିଆଯାଇଛି । ଏହାଛଡ଼ା ଏହି ସିରିଜ୍‌ରେ ଟ୦୩୬, ଟ୦୩୬, ଟ୧୬, ଟ୧୪ର ଚାରିଗୋଟି ଅଧିକା ଟିକଟ ଦିଆଯାଇଛି । ଏଗୁଡ଼ିକ ବ୍ୟୋମ ଡାକରେ ବ୍ୟବହାର କରିବା ପାଇଁ ପ୍ରକାଶିତ ହୋଇଛି ।

## ଡାକଟିକଟର ଚିତ୍ର ବିବରଣୀ

ଦୁଇପଇସିକିଆ ଟିକଟରେ ହଳଯନ୍ତ୍ରର ଚିତ୍ର ଦିଆଯାଇ ପଞ୍ଚବାର୍ଷିକ ଯୋଜନାର ପ୍ରଧାନ ଉନ୍ନତି ବିଧାୟକ କାର୍ଯ୍ୟ କୃଷିକୁ ଲୋକମୁଖରେ ପ୍ରଚାର ପାଇଁ ଅଧିକ ଗୁରୁତ୍ୱ ଦିଆଯାଇଛି । ତାପରେ ତିନି ପଇସା ଟିକଟରେ କୂଅରୁ ପାଣି କାଢ଼ିବା, ଜଳସେଚନର ଚିତ୍ର ଦିଆଯାଇଛି । କୃଷିପ୍ରଧାନ ଦେଶରେ ଗାଈ ବଳଦହିଁ ଦେଶର ସଂପଦ । ସେଥିହେତୁ ଏକ ସୁସ୍ଥ ସବଳ ହଳେ ବଳଦର ଚିତ୍ର ଚାରିଅଣା ଡାକଟିକଟରେ ଦିଆଯାଇଛି ।

ପଞ୍ଚବାର୍ଷିକ ଯୋଜନାର ପ୍ରଧାନ ଯୋଜନା ନଦୀବନ୍ଧ ଯୋଜନା । ତାହା ଦର୍ଶାଇବା ପାଇଁ ନଦୀବନ୍ଧ ଯୋଜନାର ଗୋଟିଏ ପ୍ରଧାନ ଯୋଜନା ଦାମୋଦର ବନ୍ଧର ଗୋଟିଏ ଚିତ୍ର ଏକଅଣା ଡାକଟିକଟରେ ଦିଆଯାଇଛି । ପଞ୍ଚବାର୍ଷିକ ଯୋଜନାର ଗୋଟିଏ ପ୍ରଧାନ ଉଦ୍ଦେଶ୍ୟ ମ୍ୟାଲେରିଆ ନିବାରଣ, ଛଅଣା ଡାକ ଟିକଟଟିରେ ଧାନକ୍ଷେତ, କଳକାରଖାନା ସହିତ ଦୁଇଟି ସର୍ପ ଓ ମ୍ୟାଲେରିଆ ଜୀବାଣୁବାହକ ମଶାର ଚିତ୍ର ଦିଆଯାଇଛି ।

ଏହାଛଡ଼ା ଦେଶର କଳକାରଖାନାର ଚିତ୍ର ସାତଗୋଟି ଟିକଟରେ ଦିଆଯାଇଛି । ଅଣାକିଆ ଡାକ ଟିକଟଟିରେ ଲୁଗାକଳର ଚିତ୍ର ଦିଆଯାଇଛି ଏବଂ ଆଠଅଣା, ଟ୦୩, ଟ୧୯, ଟ୨୯, ଟ୫୯, ଟ୧୦୯ ଟିକଟ ଗୁଡ଼ିକରେ ଯଥାକ୍ରମେ ଚିତ୍ତରଞ୍ଜନ ରେଳ ଇଞ୍ଜିନ କାରଖାନା; ହିନ୍ଦୁସ୍ଥାନ ବିମାନ ନିର୍ମାଣ କାରଖାନା ବାଙ୍ଗାଲୋର; ଭାରତୀୟ ଟେଲିଫୋନ୍ ତିଆରି କାରଖାନା, ବାଙ୍ଗାଲୋର; ବିରଳା ମୃତ୍ତିକା କାରଖାନା, ଆଲ୍‌ୱାଇ; ସିନ୍ଦ୍ରି ସାର କାରଖାନା ଓ ଟାଟା ଲୁହା ଇସ୍‌ପାତ କାରଖାନାର ଆଂଶିକ ଚିତ୍ର ଉପରୋକ୍ତ ଟିକଟ ଗୁଡ଼ିକରେ ସ୍ଥାନ ପାଇଛି ।

ଭାରତର କୁଟୀରଶିଳ୍ପ ମଧ୍ୟରେ ଲୁଗା ବୁଣା ପ୍ରଧାନ । ତେଣୁ ଏହାର ଦୁଇଟି ଚିତ୍ର ଦୁଇଅଣା ଏବଂ ତିନିଅଣା ଟିକଟରେ ଦିଆଯାଇଛି । ଦୁଇଅଣା ଟିକଟଟିରେ ଜଣେ ନାରୀ ଅରଟରେ ସୂତାକାଟିବାର ଚିତ୍ର ଏବଂ ତିନିଅଣା ଡାକଟିକଟରେ ଜଣେ ନାଗା ରମଣୀ ତନ୍ତରେ ଲୁଗା ବୁଣୁଥିବା ଚିତ୍ର ଦିଆଯାଇଛି ।

ବ୍ୟୋମ ଡାକରେ ବ୍ୟବହୃତ ହେବାପାଇଁ ଯେଉଁ ଚାରିଗୋଟି ଟିକଟ ପ୍ରକାଶ ପାଇଛି ସେଥିରେ ଭାରତର ଚାରିଗୋଟି ନୈସର୍ଗିକ ଦୃଶ୍ୟର ଚିତ୍ର ଦିଆଯାଇଛି । ଦଶଅଣା ଡାକଟିକଟରେ ସମୁଦ୍ର ସଂଲଗ୍ନ ବୋମ୍ବାଇ ମହାନଗରୀର ଏକ ପ୍ରାନ୍ତର ଦୃଶ୍ୟ; ଚଉଦଅଣା ଡାକ ଟିକଟରେ କାଶ୍ମୀର ଉପତ୍ୟକାର ଏକ ଦୃଶ୍ୟ; ଏକଟଙ୍କା ଦୁଇଅଣା ଡାକଟିକଟରେ ସମୁଦ୍ର ସଂଲଗ୍ନ କୁମାରିକା ଅନ୍ତରୀପର ଦୃଶ୍ୟ ଓ ଦେଡ଼ଟଙ୍କିଆ ଡାକ ଟିକଟଟିରେ ଉତ୍ତୁଙ୍ଗ କାଞ୍ଚନଜଙ୍ଘା ଶୃଙ୍ଗର ଚିତ୍ର ଦିଆଯାଇଛି ।

ପଞ୍ଚବାର୍ଷିକ ଯୋଜନା ସିରିଜ୍‌ରେ ଏପରି ଦୃଶ୍ୟାବଳୀର ଚିତ୍ର କାହିଁକି ସ୍ଥାନ ପାଇଲା ତାହା ଜଣା ଯାଉନାହିଁ । ଏହାଛଡ଼ା ଉକ୍ତ ଦୃଶ୍ୟାବଳୀ ସନ୍ନିହିତ

( ୨୦ ପୃଷ୍ଠା ଦେଖନ୍ତୁ )

# ପରିଚୟ

## ଡଃ ସର୍ବପଲ୍ଲୀ ରାଧାକୃଷ୍ଣନ୍

ଶ୍ରୀ ବରଦା ପ୍ରସନ୍ନ ମହାନ୍ତି

ଆଜି ପ୍ରତ୍ୟେକ ଭାରତୀୟଙ୍କ ନିକଟରେ ସର୍ବପଲ୍ଲୀ ରାଧାକୃଷ୍ଣନ୍ ସୁପରିଚିତ । ଦିନ ଥିଲା ଯେତେବେଳେ ସେ ସ୍ୱଦେଶ ଅପେକ୍ଷା ବିଦେଶରେ ଖୁବ୍ ଜଣାଶୁଣା ଥିଲେ । କିନ୍ତୁ ସେଦିନ ଚାଲି ଯାଇଛି । ଆଜି ସେ ସାଧାରଣତନ୍ତ୍ର ଭାରତର ଉପ-ରାଷ୍ଟ୍ରପତି । ସେ ଅନେକଙ୍କ ନିକଟରେ ପରିଚିତ ହେଲେହେଁ ତାଙ୍କର ବହୁମୁଖୀ ପ୍ରତିଭା ଓ ମହତ୍ତ୍ୱର ପରିଚୟ ବୋଧହୁଏ ପାଇଥିବେ ବହୁତ କମ୍ । ମୁଖ୍ୟତଃ ଦାର୍ଶନିକ ହେଲେ ହେଁ ସେ ଲେଖକ, ଶିକ୍ଷକ, ବକ୍ତା ଓ ଶିକ୍ଷାବିତ୍ ଭାବରେ ଖ୍ୟାତି ଲଭିଛନ୍ତି ।

ରାଧାକୃଷ୍ଣନ୍ ମାନ୍ଦ୍ରାଜର ୪୦ ମାଇଲ ଦୂରରେ ଅବସ୍ଥିତ ତିରୁତାନି ନାମକ ସ୍ଥାନରେ ୧୮୮୮ ମସିହା ସେପ୍ଟେମ୍ବର ମାସରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାମାତା ଥିଲେ ଅତିଶୟ ଧର୍ମପ୍ରାଣ । ଦର୍ଶନ ଓ ଦାରିଦ୍ର୍ୟ ତ ସବୁଦିନେ ସଙ୍ଗିଷ୍ଟ । ରାଧାକୃଷ୍ଣନ୍‌ଙ୍କର ପିତା ଥିଲେ ଜନୈକ ଜମିଦାରଙ୍କର କର୍ମଚାରୀ । ତେଣୁ ସେ ବିଶେଷ ସଙ୍ଗତିସମ୍ପନ୍ନ ନ ଥିଲେ । ସେ ତାଙ୍କ ଜୀବନୀ (My search for truth) ରେ ଲେଖିଛନ୍ତି, "ଉଚ୍ଚବଂଶ ଓ ଧନ ଯୋଗୁଁ ଯେଉଁ ସୁବିଧା ଓ ସୁଯୋଗ ସାଧାରଣତଃ ମିଳିଥାଏ ମୋର ସେପରି କିଛି ନ ଥିଲା ।" ତେଣୁ ସେ ଭଲଭାବେ ଜାଣିଥିଲେ ଯେ ଜୀବନରେ ସେ ଯାହା କିଛି କରିବେ ତାହା କେବଳ ନିଜର ପରିଶ୍ରମ ଓ ଅଧ୍ୟବସାୟ ବଳରେ ।

ମାନ୍ଦ୍ରାଜର ଖ୍ରୀଷ୍ଟିଆନ ମିଶନ ସ୍କୁଲରେ ରାଧାକୃଷ୍ଣନ୍ ଆଠବର୍ଷ ଅଧ୍ୟୟନ କରିଥିଲେ । ତାପରେ ସେ ମାନ୍ଦ୍ରାଜ ଖ୍ରୀଷ୍ଟିୟାନ କଲେଜକୁ ଗଲେ ଓ ସେଠାରେ ତାଙ୍କୁ ଚାରିବର୍ଷ ରହିବାକୁ ପଡ଼ିଥିଲା । ସେତେବେଳେ ସେ ଅସାଧାରଣ ବିଚକ୍ଷଣତା ଦେଖାଇଥିଲେ । ୧୯୦୯ ମସିହାରେ ସେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଏମ୍.ଏ. ପାସ କରିଥିଲେ । ତାଙ୍କ ବିଷୟରେ ଅଧ୍ୟାପକମାନେ ସେଦିନ ଯେଉଁ ଉଚ୍ଚଆଶା ପୋଷଣ କରିଥିଲେ ତାଠାରୁ ବହୁ ଦୂରକୁ ସେ ଆଜି ଅଗ୍ରସର ହୋଇ ଯାଇଛନ୍ତି ।

ସେହିବର୍ଷ ସେ ମାନ୍ଦ୍ରାଜର ପ୍ରେସିଡେନ୍‌ସି କଲେଜରେ ସହକାରୀ ଅଧ୍ୟାପକରୂପେ ନିଯୁକ୍ତ ହେଲେ । ଅତି ଉତ୍ତମ ଅଧ୍ୟାପନା ପାଇଁ ସେ ଅତିଶୀଘ୍ର ଛାତ୍ରମାନଙ୍କ ମଧ୍ୟରେ ପ୍ରିୟ ହୋଇପଡ଼ିଲେ । କ୍ରମେ ସେ କବିଗୁରୁ ରବୀନ୍ଦ୍ରନାଥଙ୍କ ଲେଖା ଅତି ମନଯୋଗର ସହ ପଢ଼ିଲେ ଓ ୧୯୧୮ ମସିହାରେ ଠାକୁରଙ୍କ ଦର୍ଶନ (Phiosophy of Tagore) ପ୍ରକାଶ କଲେ । ଏଥିପାଇଁ ସେ ଜଣେ ଉଚ୍ଚଧରଣର ଭାବୁକ ଓ ଲେଖକ ଭାବେ ଖ୍ୟାତି ଲାଭ କଲେ । ସେହି ବର୍ଷ ସେ ମହୀଶୂର ବିଶ୍ୱବିଦ୍ୟାଳୟରେ ଦର୍ଶନ-ଅଧ୍ୟାପକ ରୂପେ ନିଯୁକ୍ତ ହୋଇ ମହୀଶୂର ଗଲେ । ସେଠାରେ ୧୯୨୦ ମସିହାରେ ସେ ତାଙ୍କର Reign of Religion in Contemporary Philosophy ପୁସ୍ତକ ପ୍ରକାଶ କଲେ । କେବଳ ମହୀଶୂର ବା ମାନ୍ଦ୍ରାଜରେ ଆବଦ୍ଧ ନ ରହି ତାଙ୍କ ନାମ ଚାରିଆଡ଼େ ଶୁଣାଗଲା ।

କଲିକତାରେ ତାଙ୍କ ନାମ ପହଞ୍ଚିବାକୁ ବିଶେଷ ବିଳମ୍ବ ହେଲାନାହିଁ । କଲିକତା ବିଶ୍ୱବିଦ୍ୟାଳୟର କୁଳପତି ତଥା ପ୍ରସିଦ୍ଧ ଶିକ୍ଷାବିତ୍ ସାର୍ ଆଶୁତୋଷ ମୁଖର୍ଜୀ ତାଙ୍କ ବିଶ୍ୱବିଦ୍ୟାଳୟକୁ ଚାଲିଆସିବାପାଇଁ ଅନୁରୋଧ କଲେ । ୧୯୨୧ ମସିହାରେ ତାଙ୍କ ଅନୁରୋଧ ରକ୍ଷାକରି ସେ କଲିକତା ଚାଲିଆସିଲେ ଓ ସେଠାରେ ଅବଶିଷ୍ଟ କୋଡ଼ିଏ ବର୍ଷ ଅତିବାହିତ କରିଥିଲେ । ୧୯୨୬ ମସିହାରେ ପ୍ରଥମଥର ନିମିତ୍ତ ସେ ଇଂଲଣ୍ଡ ଗଲେ ଓ କଲିକତା ବିଶ୍ୱବିଦ୍ୟାଳୟ ତରଫରୁ ବ୍ରିଟିଶସାମ୍ରାଜ୍ୟ ବିଶ୍ୱବିଦ୍ୟାଳୟ ସମ୍ମିଳନୀରେ ଯୋଗ ଦେଇଥିଲେ । ସେଠାରେ ସେ 'ହିନ୍ଦୁ ଦୃଷ୍ଟିରେ ଜୀବନ' (The Hindu view of Life) ଶୀର୍ଷକ ବିଷୟରେ କେତେଗୁଡ଼ିଏ ବକ୍ତୃତା ଦେଇଥିଲେ ଓ ତାହା ବର୍ତ୍ତମାନ ପୁସ୍ତକାକାରରେ

ପ୍ରକାଶିତ ହୋଇଛି । ତତ୍ପରେ ହାଭାର୍ଡ଼ ବିଶ୍ୱବିଦ୍ୟାଳୟର ଆନ୍ତର୍ଜାତିକ ଦର୍ଶନ ସମ୍ମିଳନୀରେ ଯୋଗଦେବା ପାଇଁ ଆମେରିକା ଗଲେ । ସେଠାରେ 'କାଲି' ବା 'ସଭ୍ୟତାର ଭବିଷ୍ୟତ୍' ବିଷୟରେ ବକ୍ତୃତା ଦେଇଥିଲେ । ତାହା ମଧ୍ୟ ପୁସ୍ତକାକାରରେ ପ୍ରକାଶିତ ହୋଇଅଛି ।

୧୯୩୧ ମସିହାରେ ସେ ଆନ୍ଧ୍ର ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି ହେଲେ । ୧୯୩୮ ମସିହାରେ ବ୍ରିଟିଶ ଏକାଡ଼େମିରେ ଗୌତମବୁଦ୍ଧଙ୍କ ଉପରେ ଏକ ବକ୍ତୃତା ଦେବାପାଇଁ ନିମନ୍ତ୍ରିତ ହେଲେ । ଏହି ବକ୍ତୃତା ଏପରି ମନୋମୁଗ୍ଧକର ହୋଇଥିଲା ଯେ ସେ ଉକ୍ତ ଏକାଡ଼େମୀର ସଭ୍ୟ ନିର୍ବାଚିତ ହେଲେ । ବ୍ରିଟିଶ ଏକାଡ଼େମୀରେ ସଭ୍ୟ ହେବାରେ ସେ ହେଉଛନ୍ତି ପ୍ରଥମ ଓ ଶେଷ ଭାରତୀୟ ।

୧୯୩୯ରେ ପଣ୍ଡିତ ମଦନମୋହନ ମାଲବ୍ୟ ତାଙ୍କୁ ବନାରସ ବିଶ୍ୱବିଦ୍ୟାଳୟର କୁଳପତି ହେବା ପାଇଁ ଅନୁରୋଧ କଲେ । କିନ୍ତୁ ରାଧାକୃଷ୍ଣନ ବିନା ବେତନରେ କୁଳପତିପଦ ଗ୍ରହଣ କଲେ ଓ ସେଠାରେ ଅବଶିଷ୍ଟ ନ'ବର୍ଷ ରହିଲେ ।

୧୯୪୪ରେ ଚୀନସରକାରଙ୍କ ଅନୁରୋଧରେ ସେ ଚୀନ ଯାତ୍ରା କଲେ ଓ ସେଠାରେ ତାଙ୍କୁ ମହାସମାରୋହରେ ଅଭ୍ୟର୍ଥନା କରାଯାଇଥିଲା । ସେଠାରେ ଭାରତୀୟ ସଭ୍ୟତା ଓ ସଂସ୍କୃତି ଉପରେ ବାରଗୋଟି ଭାଷଣ ଦେଇଥିଲେ । ଏଗୁଡ଼ିକ ସଙ୍କଳିତ ହୋଇ ଏବେ India and China ନାମକ ପୁସ୍ତକରେ ପ୍ରକାଶିତ ହୋଇଛି । ୧୯୪୬ ରୁ ୧୯୫୩ ପର୍ଯ୍ୟନ୍ତ ସେ UNESCO କୁ ଭାରତୀୟ ପ୍ରତିନିଧି ଦଳର ନେତା ଭାବରେ ଯୋଗଦେଇ ଆସିଛନ୍ତି ଓ ୧୯୫୩ରେ ସେ ତାର ସଭାପତି ରୂପେ ନିର୍ବାଚିତ ହୋଇଥିଲେ । ଭାରତର ସ୍ୱାଧୀନତାରେ ସେ ଭାରତୀୟ ବ୍ୟବସ୍ଥାପକ ସଭାର ସଭ୍ୟ ନିର୍ବାଚିତ ହେଲେ । ୧୯୪୯ ରେ ସେ ଭାରତସରକାରଙ୍କ ବିଶ୍ୱବିଦ୍ୟାଳୟ ସାହାଯ୍ୟ କମିଟିର ଚେୟାରମ୍ୟାନ ନିଯୁକ୍ତ ହେଲେ ।

ସେହି ବର୍ଷ ସେ ପ୍ରଧାନମନ୍ତ୍ରୀ ନେହେରୁଙ୍କ ଅନୁରୋଧରେ ଋଷିଆକୁ ଭାରତୀୟ ପ୍ରତିନିଧି ରୂପେ ଗଲେ ଓ ସେଠାରୁ ଫେରି ସେ ଭାରତର ଉପ-ରାଷ୍ଟ୍ରପତି ଦାୟିତ୍ୱ ଗ୍ରହଣ କରି ମାତୃଭୂମିର ସେବାରେ ଲାଗିଛନ୍ତି ।

ରାଧାକୃଷ୍ଣନଙ୍କ ଜୀବନୀ ଜାଣି ତାଙ୍କ ଦୈନନ୍ଦିନ ଜୀବନ ବିଷୟରେ କିଛି ଜାଣିବାକୁ ଇଚ୍ଛା ହେବନି । ସେ ନିରାମିଷାଶୀ; ଅଳ୍ପ ଓ ହସ ଖୁସି ଖୁବ୍ ଭଲପାନ୍ତି । ତାଙ୍କ ସଙ୍ଗରେ ଅଧିକ ସମୟ କଥାବାର୍ତ୍ତା କଲେ ସେ ହସେଇ ହସେଇ ବେଦମ୍ କରନ୍ତି । ପ୍ରତିଦିନ ଭୋର୍‌ରୁ ଉଠି ୬ ଟାରୁ ୭ ଟା ପର୍ଯ୍ୟନ୍ତ ସେ ପୂଜା ଓ ପ୍ରାର୍ଥନା କରନ୍ତି । ତା ପରେ ସକାଳର ଅବଶିଷ୍ଟ ସମୟ ଲେଖା ପଢ଼ାରେ କଟାନ୍ତି । ପୁସ୍ତକକୁ ତାଙ୍କ ଜୀବନର ଶ୍ରେଷ୍ଠ ବନ୍ଧୁ ବୋଲି ମନେ କରନ୍ତି । ତାଙ୍କ ପରି ବିଚକ୍ଷଣ ବକ୍ତା ପୃଥିବୀରେ ବହୁତ କମ୍ ଥିବେ । ଆଶ୍ଚର୍ଯ୍ୟର ବିଷୟ କୌଣସି ବକ୍ତୃତା ଦେବା ପୂର୍ବରୁ ସେ କେବେ ହେଲେ ନୋଟ୍ କରନ୍ତିନ । ମାତୃଭୂମିର ଭାଗ୍ୟ ନିୟନ୍ତ୍ରଣ ପାଇଁ ଯେଉଁ ତିନିଜଣ କର୍ଣ୍ଣଧାରଙ୍କ ଉପରେ ବର୍ତ୍ତମାନ ଆମ୍ଭେମାନେ ସମସ୍ତ ଦାୟିତ୍ୱ ନ୍ୟସ୍ତ କରିଛୁ ସେମାନଙ୍କ ମଧ୍ୟରେ ଡଃ ରାଧାକୃଷ୍ଣନ୍ ଜଣେ ଓ ଆମ୍ଭେମାନେ ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁ ଭଗବାନ ତାହାଙ୍କୁ ଦୀର୍ଘଜୀବୀ କରନ୍ତୁ ।



## ମାର୍ଶାଲ ବୁଲଗାନିନ୍

ଶ୍ରୀ ରାମହରି ମିଶ୍ର

ବେରିଆଙ୍କ ପତନ ପରେ ପ୍ରଧାନ ମନ୍ତ୍ରୀ ମାଲେନକୋଭଙ୍କ ଇସ୍ତଫା ରୁଷର ଇତିହାସରେ ଗୋଟିଏ ପ୍ରଧାନ ଘଟଣା । ଏହି ନାଟକୀୟ ପରିବର୍ତ୍ତନ ପରେ ମାଲେନକୋଭଙ୍କ ଉତ୍ତରାଧିକାରୀ ରୂପେ ଦେଖାଦେଲେ ମାର୍ଶାଲ ନିକୋଲାଇ ଆଲେକ୍‌ସାଣ୍ଡ୍ରୋଭିଚ୍ ବୁଲ୍‌ଗାନିନ୍ । ସେ ଏଥିପୂର୍ବରୁ ମାଲେନ୍‌କୋଭଙ୍କ ଅଧୀନରେ ରୁଷିଆର ପ୍ରତିରକ୍ଷା ମନ୍ତ୍ରୀ ଓ ଉପପ୍ରଧାନ ମନ୍ତ୍ରୀ ଥିଲେ । ସେ ଏକାଧାରରେ ଜଣେ ବ୍ୟବସାୟୀ, ରାଜନୈତିକ ଜେନେରାଲ ଓ କୂଟନୀତିଜ୍ଞ । ତାଙ୍କର ବୟସ ବର୍ତ୍ତମାନ ୫୯ ବର୍ଷ ।

ସେ ରଣକ୍ଷେତ୍ରରେ କୌଣସି ସୈନ୍ୟ ବାହିନୀରେ ସେନାପତିତ୍ୱ କରି ନ ଥିଲେ ମଧ୍ୟ ଜେନେରାଲ ପଦକୁ ଉନ୍ନୀତ ହୋଇଥିଲେ । କମ୍ୟୁନିଷ୍ଟ ଦଳପ୍ରତି ଆନୁଗତ୍ୟ ଓ ଅନୁଷ୍ଠାନ ଗଢ଼ିବାର କ୍ଷମତା ଯୋଗୁଁ ତାଙ୍କୁ ଏ ପଦ ଦିଆଯାଇଥିଲା । ସେ ଜଣେ କାରଖାନା କର୍ମଚାରୀଙ୍କ ପୁତ୍ର । ରୁଷିଆର ପଞ୍ଚବାର୍ଷିକ ଯୋଜନା ବେଳେ ସୋଭିଏଟ ଅର୍ଥନୀତି ସଂଗଠନ ବ୍ୟାପାରରେ ସେ ନିଜର ଯୋଗ୍ୟତା ଦେଖାଇଥିଲେ । ରୁଷିଆର ବିଦ୍ୟୁତ ଶିଳ୍ପ-ଉନ୍ନୟନରେ ସେ ସାହାଯ୍ୟ କରିଥିଲେ । ୧୯୩୧ ରୁ ୧୯୩୭ ସାଲ ପର୍ଯ୍ୟନ୍ତ ସେ ମସ୍କୋ ନଗରୀର ମେୟର ଥିଲେ ଏବଂ ରାଷ୍ଟ୍ର ବ୍ୟାଙ୍କର ମଧ୍ୟ ଚେୟାରମ୍ୟାନ ଥିଲେ । ୧୯୪୧ ସାଲରେ ସାମରିକ ପରିଷଦର ସଭ୍ୟ ରୂପେ ସେ ମସ୍କୋ ପ୍ରତିରକ୍ଷା ସଂଗଠନ କରିଥିଲେ । ୧୯୪୪ରେ ସେ ରାଷ୍ଟ୍ର ପ୍ରତିରକ୍ଷା କମିଟିରେ ନିଯୁକ୍ତ ହୋଇ ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ ପରିଚାଳନା କରିଥିଲେ । ସେତେବେଳେ ଉକ୍ତ କମିଟିର ଅଧ୍ୟକ୍ଷ ଥିଲେ ମାର୍ଶାଲ ଷ୍ଟାଲିନ୍ । ମାର୍ଶାଲ ଭରୋସିଲୋଭଙ୍କ ସ୍ଥାନରେ ସେ ଏ କ୍ଷେତ୍ରରେ ନିଯୁକ୍ତି ପାଇଥିଲେ । ୧୯୪୭ରେ ସେ ଷ୍ଟାଲିନ୍‌ଙ୍କ ସ୍ଥାନରେ ସଶସ୍ତ୍ର ବାହିନୀରେ ମନ୍ତ୍ରୀ ରୂପେ ନିଯୁକ୍ତ ହେଲେ । ୧୮୯୫ରେ ନିଜ୍ନିକେଭ୍ରୋସେଡ୍ (ନିଉଗର୍କି)ରେ ତାଙ୍କର ଜନ୍ମ । ସେ ମସ୍କୋ ସୋଭିଏଟର ଭୂତପୂର୍ବ ସଭାପତି ଥିଲେ । କାରଖାନାର କର୍ମଚାରୀରୂପେ ମାର୍ଶାଲ ବୁଲଗାନିନ୍ ତାଙ୍କର ଜୀବନ ଆରମ୍ଭ କରି କେନ୍ଦ୍ର ଏସିଆ ଓ ମସ୍କୋରେ ବିଶିଷ୍ଟ ଅଂଶ ଗ୍ରହଣ କରିଥିଲେ । ଗତ ଫେବୃୟାରୀ ୮ତାରିଖରୁ ସେ ସୋଭିଏଟ ରୁଷିଆର ପ୍ରଧାନ ମନ୍ତ୍ରୀରୂପେ ନିଯୁକ୍ତ ହୋଇଛନ୍ତି ।

---

# ରେଡ଼ାର (RADAR)

ଶ୍ରୀ ବିଭୂତିଭୂଷଣ ମହାନ୍ତି, ଏମ୍. ଏସ୍-ସି. ଗ୍ରାଡ୍. ବ୍ରିଟ୍. ଆଇ.ଆର୍.ଇ.

ଦ୍ୱିତୀୟ ମହାଯୁଦ୍ଧର ମାନବ ସମାଜକୁ ଦାନ ହେଉଛି 'ରେଡ଼ାର' । ଗତ ଯୁଦ୍ଧ ସମୟରେ ଜର୍ମାନୀ, ଆମେରିକା, ଓ ଇଂଲଣ୍ଡରେ ଏହା ସମ୍ବନ୍ଧରେ ଗଭୀର ଗବେଷଣା ଚାଲିଥିଲା । ବହୁଦେଶର ବିଭିନ୍ନ ବୈଜ୍ଞାନିକଙ୍କର ଅଦମ୍ୟ ଚେଷ୍ଟା ଓ ସାଧନାର ଫଳରୂପେ ଆତ୍ମପ୍ରକାଶ କରିଥିଲା 'ରେଡ଼ାର' । 'ରେଡ଼ାର' କହିଲେ କେତୋଟି ଶବ୍ଦର ମିଳିତ ଅର୍ଥକୁ ବୁଝାଏ । ଯଥା—RAdio Detection And Ranging, ଅର୍ଥାତ ବେତାର ତରଙ୍ଗ ସାହାଯ୍ୟରେ ଗୋଟିଏ ପଦାର୍ଥର ଦୂରତା ଓ ସ୍ଥାନ ନିରୂପଣ କରିବା । ବେତାର ତରଙ୍ଗକୁ ଅନ୍ୟାନ୍ୟ କାର୍ଯ୍ୟରେ ନିୟୋଜିତ କରିସାରି ବୈଜ୍ଞାନିକମାନେ ଏହାକୁ ଅନ୍ୟ ଏକ ବିଶେଷ ଜରୁରୀ କାର୍ଯ୍ୟରେ ନିୟୋଜିତ କରିଛନ୍ତି । ବିଜ୍ଞାନାଗାରରେ ବିଭିନ୍ନ ଫ୍ରିକ୍ୱେନ୍ସିର ବେତାର ତରଂଗ ପ୍ରସ୍ତୁତ କରିବାର ସଫଳତା ବୈଜ୍ଞାନିକମାନଙ୍କ ରେଡ଼ାର ଗବେଷଣାରେ ଅଧିକ ସାହାଯ୍ୟ କରିଅଛି ।

'ରେଡ଼ାର' ଗୋଟିଏ ସାଧାରଣ ତଥ୍ୟ ଉପରେ ପ୍ରତିଷ୍ଠିତ । ଆମ୍ଭେମାନେ ସମସ୍ତେ ଜାଣୁ ଯେ, ଯେ କୌଣସି ତରଂଗ କୌଣସି ପଦାର୍ଥ ଦ୍ୱାରା ବାଧାପ୍ରାପ୍ତ ହେଲେ ପ୍ରତିଫଳିତ ବା ପ୍ରତିହତ ହୋଇ ପୁଣି ଫେରିଆସେ । ଖରାରେ ଦର୍ପଣ ଦେଖାଇଲେ ଦର୍ପଣରୁ ଆଲୋକ ରେଖାସବୁ ପ୍ରତିଫଳିତ ହୋଇ ଅନ୍ୟସ୍ଥାନରେ ପଡ଼ନ୍ତି । ଅନ୍ୟାନ୍ୟ ସରଳ ବୈଜ୍ଞାନିକ ପରୀକ୍ଷା ଦ୍ୱାରା ମଧ୍ୟ ଦେଖାଯାଇଛି ଯେ ଆଲୋକ ଓ ବେତାର ତରଂଗ ସରଳ-ରେଖାରେ ଗତି କରନ୍ତି । ତେଣୁ ଯଦି ଗୋଟିଏ ଏରିୟାଲ ସାହାଯ୍ୟରେ ବେତାର ତରଂଗକୁ ଆକାଶ ମାର୍ଗକୁ ଛାଡ଼ି ଦିଆଯାଏ ଏବଂ ଯଦି ବେତାର ତରଂଗ ଆକାଶ ମାର୍ଗରେ କୌଣସି ପଦାର୍ଥ ଦ୍ୱାରା ପ୍ରତିଫଳିତ ହୁଏ ତାହାହେଲେ ପୁଣି ପୃଥିବୀପୃଷ୍ଠକୁ ଫେରିଆସିବ । ପୃଥିବୀ ପୃଷ୍ଠକୁ ଫେରି ଆସୁଥିବା ବେତାର ତରଂଗକୁ ଗୋଟିଏ ରେଡ଼ିଓ ରିସିଭର୍‌ରେ ଧରିହେବ । ବେତାର ତରଙ୍ଗର ଗତି ଏକ ସେକେଣ୍ଡରେ ୧୮୬,୦୦୦

ମାଇଲ ହେଲେ ମଧ୍ୟ, ଏରିୟଲରୁ ବେତାର ତରଙ୍ଗ ଯାଇ ଆକାଶ ମାର୍ଗରେ କୌଣସି ପଦାର୍ଥ ଦ୍ୱାରା ପ୍ରତିଫଳିତ ହୋଇ ପୁଣି ପୃଥିବୀ ପୃଷ୍ଠକୁ ଫେରି ଆସିବାକୁ ହୁଏ ତ ଏକ ସେକେଣ୍ଡର ଏକ ହଜାର ଭାଗରୁ ଭାଗେ ସମୟ ନେଇ ପାରେ । ଏହି ସମୟର ବ୍ୟବଧାନ ଜାଣି ପାରିଲେ ପୃଥିବୀ ପୃଷ୍ଠରୁ ପଦାର୍ଥଟି କେତେ ଉଚ୍ଚରେ ଅଛି ଜାଣି ହେବ । ତା ଛଡ଼ା ତ୍ରିକୋଣମିତି ସୂତ୍ର ସାହାଯ୍ୟରେ ମଧ୍ୟ ପଦାର୍ଥର କୌଣିକ ଦୂରତ୍ୱ ଓ ସ୍ଥାନ ନିରୂପଣ କରି ହେବ । 'ରେଡ଼ାର' ଏହିପରି ଭାବରେ କାର୍ଯ୍ୟ କରେ ।

ରେଡ଼ାର ଯେଉଁ ବେତାର ତରଙ୍ଗ ବ୍ୟବହାର କରେ ତାହାର ଫ୍ରିକ୍ୱେନ୍‌ସି ଅତି ବେଶୀ, ଯଥା— ୧୦୦ ରୁ ୧୦,୦୦୦ ମେଗା ସାଇକଲ୍ । ୧୦୦୦,୦୦୦ ସାଇକଲ୍‌ରେ ଏକ ମେଗା ସାଇକଲ୍ । ଏହି ଧରଣର ତରଙ୍ଗକୁ ହାଇ ଫ୍ରିକ୍ୱେନ୍‌ସି ବା ସର୍ଟ ୱେଭ୍ କୁହାଯାଏ । ଅନେକ କ୍ଷେତ୍ରରେ ଏହି ଧରଣର ବେତାର ତରଙ୍ଗର ଲମ୍ବ ପ୍ରାୟ ୧୦ ସେଣ୍ଟିମିଟର ହୋଇଥାଏ ଏବଂ ଏହାକୁ ଅଲଟ୍ରା ସର୍ଟ ୱେଭ୍ କୁହାଯାଏ । ଟ୍ରାନ୍‌ସମିଟାରରେ ଅସ୍‌ସିଲେଟର୍ ଦରକାର ହୋଇଥାଏ, କାରଣ ଅସ୍‌ସିଲେଟର୍ ଗୋଟିଏ ନିର୍ଦ୍ଦିଷ୍ଟ ଲମ୍ବର ବେତାର ତରଙ୍ଗ ପ୍ରସ୍ତୁତ କରେ । ରେଡ଼ାର୍‌ରେ ଯେଉଁ ଅସ୍‌ସିଲେଟର ଥାଏ ସେଥିରେ ସାଧାରଣ ରେଡ଼ିଓ ଭଲ୍‌ଭ ପରିବର୍ତ୍ତେ କ୍ଲାଇଷ୍ଟ୍ରନ୍ ବା ମାଗ୍‌ନେଟ୍ରନ ଭଲ୍‌ଭ ଥାଏ । ଏହି ଭଲ୍‌ଭ ଖୁବ୍ ଛୋଟ ଲମ୍ବର ବେତାର ତରଙ୍ଗ ପ୍ରସ୍ତୁତ କରେ । ସାଧାରଣ ରେଡ଼ିଓ ବ୍ୟବସ୍ଥାରେ ଯେଉଁ ବେତାର ତରଙ୍ଗ ବ୍ୟବହାର କରାଯାଏ ତାହା ସମୟାନୁସାରୀ ଏରିୟଲ୍‌ରୁ ସବୁବେଳେ ଆକାଶମାର୍ଗକୁ ଯାଉଥାଏ । ଏହାକୁ ରେଡ଼ାର୍‌ରେ ବ୍ୟବହାର କରାଯାଏ ନାହିଁ । ରେଡ଼ାର୍‌ର ଏରିୟଲ୍‌ରୁ ଯେଉଁ ଉଚ୍ଚ ଫ୍ରିକ୍ୱେନ୍‌ସି ବିଶିଷ୍ଟ ତରଙ୍ଗ ଆକାଶମାର୍ଗକୁ ନିକ୍ଷେପ କରାଯାଏ ତାହା ଏକ ସେକେଣ୍ଡରେ ଏରିୟଲ୍‌ରୁ ଅନେକଥର ନିକ୍ଷେପିତ ହୁଏ । ଏହାକୁ ପଲ୍‌ସ୍ କହନ୍ତି । ପଲ୍‌ସ୍‌ଗୁଡ଼ିକ ଆକାଶମାର୍ଗକୁ ଯାଇ ପଦାର୍ଥରେ ବାଧାପ୍ରାପ୍ତ ହୋଇ ଫେରି ଆସିବା ସମୟରେ ଏରିୟଲ୍ ସାହାଯ୍ୟରେ ରିସିଭର୍ ଭଳି ଗୋଟିଏ ଯନ୍ତ୍ରକୁ ଆସନ୍ତି । ଏହାକୁ 'ଇଣ୍ଡିକେଟର' କୁହାଯାଏ । ପଲ୍‌ସଗୁଡ଼ିକୁ ଯେଉଁ ଏରିୟଲ୍ ଆକାଶମାର୍ଗକୁ ଛାଡ଼ିଥାଏ ସେହି ଏରିୟଲ ପୁଣି ଇଣ୍ଡିକେଟର୍‌କୁ ପଠାଏ । ଇଣ୍ଡିକେଟର୍‌ର ପ୍ରସ୍ତୁତ କରିବାର ପ୍ରଣାଳୀ ଖୁବ ଆଶ୍ଚର୍ଯ୍ୟଜନକ । ଏହା ସାହାଯ୍ୟରେ ବିନା ହିସାବରେ ପଦାର୍ଥର ଦୂରତା ଓ ସ୍ଥାନ ନିରୂପଣ କରିହୁଏ ।

ରେଡ଼ାର ସାହାଯ୍ୟରେ, ଆକାଶ ମାର୍ଗରେ ଯାଉଥିବା ଉଡ଼ାଜାହାଜର ଗତି, ଦୂରତା ଓ ସ୍ଥାନ ନିରୂପଣ କରିହେବ । ଅନ୍ଧାରରେ ବା କୁହୁଡ଼ିରେ ଯାଉଥିବା ବେଳେ ଉଡ଼ାଜାହାଜର ଚାଳକ ରେଡ଼ାର ସାହାଯ୍ୟରେ ସଠିକ ଗତିପଥ ସ୍ଥିର କରିପାରନ୍ତି । ସମୁଦ୍ରରେ ଜାହାଜ ଯାଉଥିବା ବେଳେ ମଧ୍ୟ ଜାହାଜର ପ୍ରକୃତ ଗତିପଥ ଏହି ଯନ୍ତ୍ର ସାହାଯ୍ୟରେ ଜାଣିହୁଏ । ଯୁଦ୍ଧ ସମୟରେ ରେଡ଼ାର ସାହାଯ୍ୟରେ ଶତ୍ରୁ ପକ୍ଷର ଉଡ଼ାଜାହାଜ ଆସିବାର ସନ୍ଦେହ ହେଲେ ତାହାର ଗତିପଥ ଓ ଦୂରତା ନିରୂପଣ କରି ଧ୍ୱଂସ କରିହୁଏ । ରେଡ଼ାର-ଆଣ୍ଟିଏୟାର କ୍ରାଫ୍ଟ ଗନ୍ ସାହାଯ୍ୟରେ ବନ୍ଧୁକ ରେଡ଼ାର ସଙ୍ଗେ ସଙ୍ଗେ ଉଡ଼ାଜାହାଜକୁ ଲକ୍ଷ୍ୟ କରୁଥାଏ । ରେଡ଼ାର ସାହାଯ୍ୟରେ ଉଡ଼ାଜାହାଜରେ ଯାଇ ଗଭୀର ଅନ୍ଧକାର ମଧ୍ୟରେ ମଧ୍ୟ କୌଣସି ନିର୍ଦ୍ଦିଷ୍ଟ ଜାହାଜ ବା ସହର ଉପରେ ବୋମା ନିକ୍ଷେପ କରି ହୁଏ । ଉଡ଼ାଜାହାଜର ଚାଳକ ଏହା ସାହାଯ୍ୟରେ ନିରାପଦରେ ଏରୋଡ୍ରମ୍‌ର ରନ୍‌ୱେରେ ଓହ୍ଲାଇ ପାରନ୍ତି । ରେଡ଼ାର ସାହାଯ୍ୟରେ ମେଘମାଳାର ଗତି ଜାଣି ହୁଏ ଏବଂ କେଉଁବେଳେ କେଉଁଠାରେ ବର୍ଷା ହେବ ତାହା ସଠିକ ଭାବେ ଜାଣି ହୁଏ । ଅଷ୍ଟ୍ରେଲିଆର ରେଡ଼ିଓ ଫିଜିକସ୍ ଡିଭିଜନ୍‌ର ଅଧ୍ୟକ୍ଷ ଡକ୍ଟର ବାଉଏନ୍ ରେଡ଼ାର ସାହାଯ୍ୟରେ ମେଘମାଳାର ଗତିବିଧି ଲକ୍ଷ୍ୟ କରି କୃତ୍ରିମ ଉପାୟରେ ବର୍ଷା କରାଇ ପାରୁଛନ୍ତି ।

( ୨୫ ପୃଷ୍ଠା ଦେଖନ୍ତୁ )

( ୧୫ ପୃଷ୍ଠାର ଅବଶିଷ୍ଟାଂଶ )

ସ୍ଥାନରେ ପଞ୍ଚବାର୍ଷିକ ଯୋଜନାରେ କୌଣସି ଉନ୍ନତ କାର୍ଯ୍ୟ କରାଯାଇ ନାହିଁ । ଦ୍ୱିତୀୟରେ ଟିକଟଗୁଡ଼ିକର ଆକାର ପ୍ରତି ଦୃଷ୍ଟି ଦେଲେ ଜଣାଯାଏ ଯେ ପଇସିକିଆ ଡାକଟିକଟଟିର ଆକାର ଯେପରି ଦଶଟଙ୍କିଆ ଡାକ ଟିକଟର ଆକାର ଠିକ୍ ସେପରି । ଦଶଟଙ୍କିଆ ମୂଲ୍ୟ ଦୃଷ୍ଟିରୁ ତାର ଆକାର ତଥା ବହୁମୂଲ୍ୟ ଡାକଟିକଟ ଗୁଡ଼ିକର ଆକାର ଅଳ୍ପମୂଲ୍ୟ ଡାକଟିକଟଗୁଡିକଠାରୁ ବଡ଼ କରିବାର ଥିଲା । ତୃତୀୟରେ ଯେଉଁ କଳକାର-ଖାନାର ଚିତ୍ରଗୁଡ଼ିକ ଦିଆଯାଇଛି ତାର ନିର୍ବାଚନ ଠିକ୍ ହୋଇନାହିଁ । ସେହି ଚିତ୍ରଗୁଡ଼ିକୁ ଦେଖିଲେ ଉକ୍ତ କାରଖାନାଗୁଡ଼ିକ ବାରି ହୁଏନାହିଁ । ଶେଷରେ ଉଚ୍ଚ ମୂଲ୍ୟ ଟିକଟଗୁଡ଼ିକର ରଙ୍ଗ ଭଲ ହୋଇନାହିଁ । ଏପରି ଅନେକ ସମାଲୋଚନା ପୃଥିବୀର ବିଭିନ୍ନ ସଂଗ୍ରାହକ ଓ ଫିଲାଟେଲିକମାନେ କରିଥିବାର ଜଣା ଯାଇଛି ।

## ଫିଲାଟେଲିକ ଖବର

ଗତ ୨୫।୧୨।୫୪ ରେ ପାକିସ୍ଥାନ ସରକାର କାରାକୋରାମ ଅଭିଯାନ ସଫଳତା ଉପଲକ୍ଷରେ ଗୋଟିଏ ଦୁଇଅଣା ମୂଲ୍ୟର ଟିକଟ ପ୍ରକାଶ କରିଛନ୍ତି । ଏହା ପାକିସ୍ଥାନର ସର୍ବୋଚ୍ଚ ଶୃଙ୍ଗ ଏବଂ ପୃଥିବୀର ଦ୍ୱିତୀୟ ସର୍ବୋଚ୍ଚ ଶୃଙ୍ଗ । ଏହାର ଉଚ୍ଚତା ୨୮୨୫୦ ଫୁଟ ଅଟେ । ଗତ ୫୨ ବର୍ଷ ଧରି ଏହାର ଅଭିଯାନ ଚେଷ୍ଟା କରାଯାଉଛି । ଏହା ସର୍ବପ୍ରଥମେ ଏଙ୍ଗ୍‌ଲୋ-ଅଷ୍ଟ୍ରିଆନ-ସ୍ୱିସ୍ ଅଭିଯାତ୍ରୀଦଳ ଚେଷ୍ଟା କରିଥିଲେ । ତାପରେ ୧୯୩୯, ୧୯୫୩ ରେ କେତେକ ବୈଦେଶିକ ଅଭିଯାତ୍ରୀ ଦଳ ଚେଷ୍ଟା କରି ବିଫଳ ହୋଇଥିଲେ । ଶେଷରେ ଇଟାଲିୟାନ କାରାକୋରାମ ଅଭିଯାତ୍ରୀଦଳ ଡକ୍ଟର ଦେଶିଓଙ୍କ ଅଧିନାୟକତ୍ୱରେ ଜୁଲାଇ ୩୧, ୧୯୫୪ ରେ ଶିଖର ଭାଗରେ ପହଞ୍ଚି ପାରିଥିଲେ ।

---

# ଶଂଖ-କୋଇଲି

ଶ୍ରୀ ମୋହନ ମୃସିର ବାରିକ

( ଯେଉଁଠି ଛୁଡ଼ିଥିଲୁଁ ସେଇଠୁଁ...)

ହୁ...ହୁ...ହୁ... ! ବଡ଼ି ଗୃଳଚି । କିଏ ? କିଏ ଏ ? ଲମ୍ବିଯାଇଚି ବହୁତ ଦୂର ଯାଏ । କଳା ବିହଟା ତାର । ଓ...ଶିଳାଧର... ! ପାହାଡ଼—ଶିଳାଧର ।

"ହୁଁ... ଏଇତା ତାର ଗର୍ବ ! ଏତେ ବିକଟେ ବୋଲି ପିଲା । ଗାଲ ଚିପିଲେ—କ୍ଷୀର ବାହାରି ପଡ଼ିବ ଏତେ ତାର ଅହଂକାର ! ବଡ଼ ସାନ ଟିକିଏ ବାଛ ନାହିଁ । କାହାର ନାହିଁ । ରହ...ତୋ' ମଜା ଛଡ଼ାଉଚି ।" ଶିଳାଧର ପ୍ରତିଜ୍ଞା କଲା । ନିଶ୍ଚୟ ସେ ଶଙ୍ଖର ବାଟ ଓଗାଳିବ । ଠିଆ ହୋଇ ଯିବ ତାର ଆଗରେ । ଦେଖି ନେବ ତାର ଟାଣୁଆ ଦୁଅଳୁ ନିଜର ବଜ୍ର-କଠୋର ଛାତିରେ । ସମସ୍ତେ ଛୁଡ଼ିଦେଲେ ବୋଲି ସେ କ'ଣ ବି ଛାଡ଼ିଦେବ । ନା...ନା... ! ନିଶ୍ଚୟ ସେ ଅଟକାଇ ନେବ ଶଙ୍ଖକୁ ।

ଧୋ...ଧୋ...ଧୋ... ! ଶଙ୍ଖ ପାଟି କଲା । "କିହୋ, ତମେ କିଏ ? ମୋ ବାଟରେ ଠିଆ ହେଉଚ କାହିଁକି ? ଛୁଡ଼ିଦିଅ... ମୁଁ ଯାଏ !"

"ଯାଉନୁ... ! ମୁଁ କ'ଣ ତୋତେ ଟାଣି ରଖିଚି ? ତୋ' ଇଚ୍ଛା ହେଲେ ଯା'... !"

"ଯିବିନି'... ! କ'ଣ ବସି ରହିବ ବୋଲି ଭାବୁଚ ? ତା' ନୁହେ ନିଶ୍ଚୟ । ମୋତେ କାମ ଡାକୁଚି । ମୋର ଲକ୍ଷ ମୋତେ ଆଖି ଠାରୁଚି । ସୁତରାଂ ମୁଁ ଯିବି ନିଶ୍ଚୟ । ତେବେ ତୁମେ ମୋ ବାଟରୁ ଅଲଗା ହେଇ ଯାଅ ।" ଶଙ୍ଖ ଜବାବ ଦେଲା ।

"ମନେରଖ ଶଙ୍ଖ, ମୁଁ ଆଉ କେହି ନୁହେଁ... ! ଜାଣୁ—ମୁଁ ପର୍ବତ ରାଜ ଶିଳାଧର ! ସୁତରାଂ ତୋ' ପାଖରେ ମୁଣ୍ଡ ନୋଇଁବା ମୋ' ପକ୍ଷରେ ଅସମ୍ଭବ !"

"ମୁଁ ଜାଣେ ତୁମ ନାଁ ଶିଳାଧର ପର୍ବତ । କାହିଁକି ଏବେ ଫମ୍ପେଇ ହେଉଚ ? ଯେଉଁମାନେ ଯେତେ ଶ୍ରେଷ୍ଠ ସେମାନେ ନିଜକୁ ସେତେ ବଡ଼ ବୋଲି ପ୍ରଚାର କରି ହୁଅନ୍ତି । ନ ହେଲେ, କାଳେ କିଏ ସେମାନଙ୍କୁ ଶ୍ରେଷ୍ଠ ବୋଲି କହିଦେବ । ଏତିକ ତମେ ଜାଣି ପାରୁନ ସ୍ଥିର ପଥରରେ ଯାର ବୁକୁଟା ଗଢ଼ା···ତା'ର ପୁଣି ଫାଣ ? ତାର ପୁଣି ଗର୍ବ ?"

"ଶଙ୍ଖ···ସାବଧାନ ହେଇ କଥା କହ । କେତେଟା ଦୁର୍ବଳକୁ ଠେଲି ଦେଇ ଆସିଛୁ । ସେଇ-ଥିରେ ଏତେ ଗର୍ବ ତୋର ସୁନ୍ଦର ନୁହେଁ । ଶୁଣ··· ଶିଳାଧରର ପଣ ସେ ବାଟ ଛାଡ଼ିବନି'—ଉଦ୍ଧତ ଶଙ୍ଖକୁ । କ'ଣ କରି ତୁ ପାରିବୁ··· ମୁଁ ଦେଖିବି !"

"ଦେଖିବାରେ ତେବେ ବାଞ୍ଛା ଅଛି ? ନା··· ? ପଛକୁ ଫେରି ଦେଖ । ତୁମରି ପରି ଯିଏ ସବୁ ମୋର ଗତି-ପଥରେ ବାଧକ ହେଇଥିଲେ—ସେମାନଙ୍କୁ ଟିକେ ଚାହିଁ । ସେମାନଙ୍କ ଅବସ୍ଥା ମନେ ପକାଅ । ମୁଁ ତୁମକୁ ଭଲରେ ଭଲରେ କହୁଚି ବାଟ ଛାଡ଼ି ଦିଅ । ମିଛରେ ମିଛରେ ଲଢ଼େଇ କରିବାକୁ ମୁଁ ପସନ୍ଦ କରେନି । ଶକ୍ତିର ଅମର୍ଯ୍ୟାଦା କରିବା ମୋ' ଲକ୍ଷ୍ୟର ବାହାରେ । ନଖରେ ଯେଉଁ କାମ ଛୁଟିଯିବ··· ସେଥିଲାଗି ତରବାରିର ଲୋଡ଼ା ନୁହେଁ । ତୁମେ ମୋ ପାଖରେ ଟିକେ ବାଟ ଛାଡ଼ିଦିଅ । ମୁଁ ଚାଲିଯାଏ !" ଶଙ୍ଖ ନମ୍ର-ତାର ସହିତ କହିଲା ।

"ବିନା ଲଢ଼େଇରେ କିଂତୁ ମୁଁ ଏଠାରୁ ତିଳେ ହେଲେ ଘୁଞ୍ଚିବାକୁ ତିଆର ନୁହେ । ତୋର ବଳ ଥିଲେ ତୁ ଯା' ।" ଶିଳାଧର ନ ଶୁଣି ଶଂଖ ଆଉକୁ ଆଉ ପାଦେ ଆଗେଇ ଗଲା ।

"ହଉ ହେଲା !" କହୁ କହୁ ଶଙ୍ଖ ପ୍ରବଳ ବେଗରେ ବହିଲା । ଲହଡ଼ୀ ଉପରେ ଲହଡ଼ୀ । କୋଟି କୋଟି ତାର ସଙ୍ଖ୍ୟା—ମାଡ଼ି ଆସିଲେ । ପ୍ରଳୟର ଗର୍ଜନ । ସତେ ଅବା ଯେପରି ଲକ୍ଷ ଲକ୍ଷ କଳାନାଗ ଆଗେଇ ଆସୁଛନ୍ତି । ଫଣା ତୋଳି ଧାଇଁଛନ୍ତି । ଘଡ଼ିକ ଭିତରେ ସୃଷ୍ଟିକୁ ଛାରଖାର କରିଦେବେ ପରା । ଦଂଶନର ଜ୍ୱାଳାରେ ପବନକୁ ଶୁଖାଇ ଦେବେ ପରା ।

ତୋ···ତୋ···! ଗୋଟିଗୋଟି ହେଇ ବାଡ଼େଇ ହେଇଗଲେ ଲହଡ଼ୀ । ଫେଣ ଉପରେ ଫେଣ । ଭଉଁରୀ ଉପରେ ଭଉଁରୀ ।

ଆକାଶରେ ତାରା । ସାଥିରେ ଚନ୍ଦ୍ର । ଛନକା ପଶିଲା ସେମାନଙ୍କ ଭିତରେ । "ଏଁ ! ଏ କ'ଣ ହିଣ୍ଡିଯିବ ଆକାଶ ?" ଭୟରେ ଥରି ଉଠିଲେ । ଆଶଂକାରେ ବୁକୁ କୋରି ହୋଇଗଲା । ଶଙ୍ଖର ଲହଡ଼ୀରେ କୋଟି କୋଟି ତାରାର ଛବି । ଲକ୍ଷ ଲକ୍ଷ ଚନ୍ଦ୍ରର ମୁହଁ । ଆଉ ଫେଣ ଗୁଡ଼ିକ ? ନୀଳ ଆକାଶରେ ମେଘର ରେଖା ! ବିଶ୍ୱାମିତ୍ର କ'ଣ ତ୍ରିଶଙ୍କୁକୁ ଏଇଠି ରଖିବେ ?

"ହା···ହା···ହା··· ! ହୋ···ହୋ···ହୋ ! ହି···ହି···ହି !!!" ହସୁଚି ପର୍ବତ । ବିଦ୍ରୂପର ବାଣ ହାଣୁଚି ଶିଳାଧର । ହସ ନୁହେ ସେ ବଜ୍ର-ଝଞ୍ଜା ସେ ।

"ଚପଳା ବାଳିକା ! ଶଙ୍ଖ··· ! ମୋ' ଝିଅର ଝିଅ ତୋ' ଠୁ ସାତ ଜନମରେ ବଡ଼ । ତୁ କରିବୁ ଲଢ଼େଇ ମୋ' ସାଥିରେ··· ?" ଖୁବ୍ ଜୋରରେ ହସି-ବାକୁ ଲାଗିଲା ଶିଳାଧର । ହସରେ ତାର ପବନ ଡରିଗଲା । ପର୍ବତମାନେ ତଳକୁ ମୁଣ୍ଡ ନୁଆଁଇ ଦେଇ ଚୁପ୍ ରହିଲେ । ଗଛରୁ ଖସି ପଡ଼ିଲା ପତ୍ର··· ଫୁଲ ! ଆକାଶରୁ ମେଘ ଅଜାଡ଼ି ହେଇ ପଡ଼ିଲା ତଳେ !

ହଜାର ହଜାର ହାତ ବଢ଼ାଇଲା ଶଙ୍ଖ । ବେଳକୁ ବେଳ ପ୍ରବଳ ହୋଇ ଉଠିଲା ସତେ ଯେପରି ଶୁକ୍ଳ ପକ୍ଷର ଚନ୍ଦ୍ରପରି ବଢ଼ି ଯାଉଚି ତାର ବଳ । ନୈରାଶ୍ୟ ତାର ଦୂର ହେଉଚି । ନୂଆ ଆଶା ନେଇ ସେ ଧକ୍କା ଦେଉଚି ।

ହସି ହସି ବେଦମ୍ ହେଉଚି ଶିଳାଧର । "ଏ··· ଠିକ୍ ସାତତାଳ ଭୁଲା । ସାତ ତାଳ ଭୁଲାପରି ମୋତେ ଲାଗୁଚି ଶଂଖ ।" ଝଡ଼ ଝଡ଼ ହସୁଚି ପର୍ବତ । ଆକାଶ-ଉଛୁଳା ହସ ତାର; ଉପରକୁ ଉଠି ଉଠି ଚାଲିଚି ସେ ।

ଆକାଶ ଚନ୍ଦ୍ରକୁ ଡର ଲାଗିଲା । ସେ ମେଘ ଗୁଡ଼ାଏ ଘୋଡ଼େଇ ହୋଇ ଉପରକୁ ଉଠିଗଲା । ମୋତେ ନ ଛୁଇଁ ପର୍ବତ । ତାରା ଆଖି ମଳିଲେ । ଚାହିଁଲେ ମିଟି ମିଟି । ଆମ ଯିବା ବାଟ କ'ଣ ବନ୍ଦ ହୋଇଯିବ ? ମହାନ୍ ଅଡୁଆ ତେବେ । ଆଗତ କଥା ଭାବି ବ୍ୟସ୍ତ ହୋଇ ପଡ଼ିଲେ ସମସ୍ତେ ।

ଏଣେ ସାରା ସଂସାର ଜଳମୟ । ଚୌପାଏ ହେଲେ ଯାଗା ବାକା ନାହିଁ । ସବୁ ଖାଲି ଜଳ··· ଜଳ··· !

ଯୁଦ୍ଧ ଡାକରା ଦେଇ ଦେଇ ଲଢ଼େଇ କରୁଛନ୍ତି ଶଙ୍ଖ ଆଉ ଶିଳାଧର, ସେମାନଙ୍କ କାନ-ଫଟା ବଜ୍ର-କୁହାଟ । ତ୍ରିଭୁବନ ଥର ଥର ! ପୃଥିବୀର ମେରୁ-ଦଣ୍ଡ ଦୋହଲି ଗଲା ।

ଦୁନିଆଁ ର ଅଣୁ ପରମାଣୁରେ ଖିତର ଲହର । ଗଛ ଲଟା ବୁଡ ସଡ଼ିଲେ ଜଳରେ । ଜୀବଜନ୍ତୁ ଭସି କାନ୍ଦିଲେ । ପର୍ବତ ସବୁ ବୁଡ଼ିଗଲେ । ସେମାନଙ୍କ ନିଶ୍ୱାସ ଆଉ ଚଳ ପ୍ରଚଳ ହୋଇ ପାରିଲାନି ।

ଅଚଳ ଶିଳାଧର !

"ହେ ଭଗବାନ୍ ! ରକ୍ଷାକର !" ସମସ୍ତେ ଡାକଲେ ଡାକଲେ ଆତୁର ହୋଇ । ପୋକ ଫିଙ୍ଗି··· ପଶୁପକ୍ଷୀ ଜନ ମାନବ··· ସଭିଙ୍କ ମୁହଁରେ କେବଳ "ରକ୍ଷାକର··· !" ସମସ୍ତେ ଶିଳାଧରକୁ କହିଲେ-"ହେ ପର୍ବତ ରାଜ, ତମେ ରକ୍ଷା କର ! ତମେ ଆମକୁ ଉଦ୍ଧାର କର । ତମେ ଟିକିଏ ବାଟ ଛାଡ଼ିଦିଅ ଶଙ୍ଖକୁ । ସେ ଚାଲିଗଲେ ସବୁ ଅଡୁଆ ତୁଟିଯିବ ।"

ଶିଳାଧର ଗ୍ରୀବା ଉଚ୍ଚା କଲା । ମୁଣ୍ଡ ଆହୁରି ଉପରକୁ ଟେକିଲା । ନଗ୍ନେତ୍ରବନ୍ଧା ସେ ।

ଶଙ୍ଖକୁ ଆସି ସେମାନେ ପୁଣି ଅନୁରୋଧ କଲେ । "ଶଙ୍ଖ ! ତୁମେ ନଦୀଶ୍ରେଷ୍ଠ ! ତୁମେ ରକ୍ଷାକର ଆମକୁ । ରକ୍ଷାକର ଛ'ପନକୋଟି ଜୀବଜନ୍ତୁଙ୍କୁ ? ତୁମେ ଏ ପ୍ରଳୟରୂପ ଛାଡ଼ିଦିଅ !"

ଶଙ୍ଖ ଜୀବଜଗତର ଗୁହାରି ଶୁଣିଲା । ଆଉ କହିଲା—"ମୋର ଏଥିରେ କ'ଣ କରିବାର ଅଛି କହିଲ ? ମୁଁ ତ ମୋର ଲକ୍ଷ୍ୟ ଭୁଲି ପାରିବନି । ଶହ ଶହ ବଜ୍ର ଆସୁ । ଦୁନିଆଁ ରେ ନିଆଁ ବରଷୁ । ଝଡ଼ରେ ପୃଥିବୀ ପାତାଳ ଭିତରେ ବୁଡ଼ିଯାଉ । ମୋର ଲକ୍ଷ୍ୟ ଲୋଡ଼ା । ମୁଁ ତୁମମାନଙ୍କ ଦୁଃଖ ପାଇଁ ସହାନୁଭୂତି ଦେଖାଉଛି । ତୁମ ଦୁଃଖରେ ମୋର ଅନ୍ତର ବି କାନ୍ଦୁଛି । କିନ୍ତୁ କର୍ତ୍ତବ୍ୟଟି କ'ଣ ପାଶୋରି ଦେବି ? ମୋ'ର ପଣ—"ଜୀବନ ପଛେ ଯାଉ···କାମଟି ଖାଲି ହେଉ !" ତେବେ ଗୋଟିଏ କାମ ମୁଁ କରିପାରେ ।"

"କି କାମ କୁହ···କୁହ ଶଙ୍ଖ ! କୁହ ଦେବ !" ସଂସାର ଉଦ୍‌ଗ୍ରୀବ ହୋଇ ପ୍ରଶ୍ନ କଲା !

"ତୁମେ ସମସ୍ତେ ଏକମୁଖ ହୋଇ ଭଗବାନଙ୍କୁ ଡାକ । ଯେତେବେଳେ ମରଲୋକରେ ବିପଦ ଆସି ପହଞ୍ଚେ···ଯେତେବେଳେ କାହାରି ଅତ୍ୟାଚାରରେ ସୃଷ୍ଟି ଛାରଖାର ହୋଇ ଯିବାକୁ ବସେ ସେତେବେଳେ ନିଜେ ଭଗବାନ ଏଇ ମାଟି ବୁକୁରେ ଜନ୍ମ ନିଅନ୍ତି । ତମ-ମାନଙ୍କର ଗୁହାରି ସେ ଅବଶ୍ୟ ଶୁଣିବେ । ସେ ଶୁଣିବା ପର୍ଯ୍ୟନ୍ତ ମୋର ଭୟଙ୍କର ରୂପକୁ ମୁଁ କମାଇ ଦେଇପାରେ । କିନ୍ତୁ ଲଢ଼େଇ ବନ୍ଦ ହେବନି ମୋର !"

"ଜୟ ଶଙ୍ଖର ଜୟ !" ସମସ୍ତେ ଯେପରି ଅବାଟରେ ପାଇଲେ ବାଟ । ଅଂଧାରରେ ମିଳିଲା ଆଲୁଅ । ଅସମ୍ଭବରେ ସମ୍ଭବର ଚିହ୍ନ !

ସେଠାରୁ ସିଏ ଡାକିଲା ଦୁର୍ଗାଙ୍କୁ ! "ହେ ମା ! ରକ୍ଷାକର ! ରକ୍ଷାକର ମୋତେ । ଏ ବିପଦରୁ ପାରିକଲେ ମୁଁ ଯୁଗ ଯୁଗ ପାଇଁ ହେବି ତୁମର ବାହନ !"

ମଇଁଷି ଯମଙ୍କୁ ଡାକିଲା । ଷଣ୍ଢ ଗୁହାରି କଲା ଦେବ ଦେବ ମହାଦେବଙ୍କୁ । ଲକ୍ଷ୍ମୀଙ୍କୁ ସୁମରଣା କଲା ପେଚା । ହଂସ ସରସ୍ୱତୀଙ୍କ ନାଁ ନେଲା । ଯେ ଯେଉଁଠି ଥିଲେ-ସେଇଠି କେବଳ ଦେବ ଦେବୀଙ୍କୁ ସୁମରଣା କରିବାରେ ଲାଗିଲେ । ଖିଆ ପିଆ··· ଶୁଆ ବସା, ମାନ ଅପମାନ ସବୁ ଭୁଲି ସମସ୍ତେ ଏକ ହୋଇ ଡାକିଲେ । ବିପଦ ବେଳେ ଏଇପରି ଜୀବ ସବୁ ଭୁଲେ । ନିଆଁ ମାଡ଼ି ଆସିଲେ ଜଙ୍ଗଲରେ ବାଘ ହରିଣ ସାଙ୍ଗ ହୋଇ ପଳାନ୍ତି । ସେଠି ଖାଦ୍ୟ ଖାଦକ, ସାନବଡ଼ର ପ୍ରଶ୍ନ ନ ଥାଏ । ସେ ହେଉଛି ଜୀବନର ପ୍ରଶ୍ନ । ପହିଲେ ଜୀବନ । ତା'ପରେ ଜୀବନର ପରିପୋଷଣ ! ଏଇ ଜୀବନ ରକ୍ଷା ପାଇଁ ଆଜି ସମସ୍ତେ ଏକାକାର ! ସମସ୍ତଙ୍କ ମନରେ ପ୍ରାଣକୁ ରକ୍ଷାକରିବାର ଚିନ୍ତା ! ଆଉ ଏକ ସ୍ୱରରେ ଈଶ୍ୱରଙ୍କୁ ପ୍ରାର୍ଥନା । (କହିବି······)



# ମଜା ଗପ *

ଅଧ୍ୟାପକ ଶ୍ରୀ ଦେବୀପ୍ରସନ୍ନ ପଟ୍ଟନାୟକ

ଜର୍ମାନୀ ଦେଶର ନାଁ ତୁମେ ସମସ୍ତେ ଶୁଣିଥିବ । ସେଠାରେ ବହୁଦିନ ଆଗେ ଫ୍ରେଡ଼େରିକ ବୋଲି ଜଣେ ରାଜା ଥିଲେ । ତାଙ୍କର ଅନେକ ସିପାହୀ ଥିଲେ । ରାଜାଙ୍କର ଗୋଟିଏ ଗୁଣ ହେଉଛି ଯେ, ଯଦି କୌଣସି ନୂଆ ସିପାହୀ ଚାକିରୀରେ ଯୋଗ ଦେଉଥିଲା, ତେବେ ସେ ନିଜେ ତାକୁ ଭେଟି ଭଲମନ୍ଦ ପଚାରୁଥିଲେ । ସେ ପ୍ରାୟ ସବୁ ନୂଆ ଲୋକଙ୍କୁ ଏଇ ତିନୋଟି କଥା ପଚାରୁଥିଲେ—"ତୁମର ବୟସ କେତେ ? ଏଠାରେ କେତେ ଦିନ ହେଲା ଯୋଗ ଦେଇଛ ? ଏ ରାଜ୍ୟ ଆଉ ଏଠାର ଖିଆପିଆ ତୁମକୁ ଭଲ ଲାଗୁଛି କି ?"

ଥରେ ଜଣେ ଫରାସୀ ଯୁବକ ଏ ରାଜାଙ୍କର ସିପାହୀ ଦଳରେ ଯୋଗ ଦେଲା । ସେ ଭଲ କରି ଜର୍ମାନୀ ଭାଷା ଜାଣି ନ ଥିଲା । ତେଣୁ କିଛିଦିନ ପରେ ସିପାହୀ ଦଳର କାପ୍ତାନ୍ ତାକୁ ସେ ଭାଷାରେ ତାଲିମ କରିବାକୁ ଠିକ କଲେ । ରାଜା ଯେଉଁ ପ୍ରଶ୍ନଗୁଡ଼ିକ ପଚାରନ୍ତି, ତାର ଉତ୍ତର ସେ ତାକୁ ଆଗେ ଶିଖାଇ ଦେଲେ । ରାଜା ଯେପରି ଗୋଟିକ ପରେ ଗୋଟିଏ ପ୍ରଶ୍ନ ସମସ୍ତଙ୍କୁ ପଚାରିଥାନ୍ତି, ତାକୁ ପଚାରିଲେ । ସେଇ କ୍ରମରେ ଗୋଟିଏ ପରେ ଆଉ ଗୋଟିଏ ଉତ୍ତର ଦେବାକୁ ମଧ୍ୟ ତାକୁ କହିଲେ । ମାସକ ପରେ ସେ ଜର୍ମାନୀ ଭାଷାରେ ମାତ୍ର ତିନୋଟି କଥା ଶିଖିଥିବାର ଦେଖାଗଲା । ସେଗୁଡ଼ିକ ହେଉଛି—"କୋଡ଼ିଏ ବର୍ଷ, ମାସେ ଓ ଉଭୟେ ।" ଏ ତିନୋଟି କଥା ହେଉଛି ରାଜାଙ୍କର ଉପର ପ୍ରଶ୍ନର ଉତ୍ତର ।

ଦିନେ ସକାଳେ ରାଜା ସିପାହୀ ଦଳ ଦେଖିବାକୁ ଆସିଲେ । ଏ ନୂଆ ଲୋକଟିକୁ ଦେଖି ସେ ପ୍ରଶ୍ନ ପଚାରିବା ଆରମ୍ଭ କଲେ । କିନ୍ତୁ ନୂଆ ସିପାହୀଟିର କପାଳ ମନ୍ଦ । ରାଜା ଯେମିତି ଭାବରେ ସମସ୍ତଙ୍କୁ ପଚାରିଥାନ୍ତି ସେପରି ନ ପଚାରି ଦ୍ୱିତୀୟ ପ୍ରଶ୍ନଟିକୁ ଆଗେ ପଚାରି ଦେଲେ । ସିପାହୀଟି ଏକେ ଭାଷା ଜାଣେ ନାହିଁ, ତହିଁରେ ପୁଣି ସେ ଗୋଟିକ ପରେ ଆଉ ଗୋଟିଏ ଉତ୍ତର ଦେବାପାଇଁ ତାଲିମ ପାଇଛି । ରାଜା ଯେତେବେଳେ ପଚାରିଲେ, "ତୁମେ ଏଠାରେ କେତେ ବର୍ଷ ଅଛ ?" ସଙ୍ଗେ ସଙ୍ଗେ ସେ ଉତ୍ତର ଦେଲା "କୋଡ଼ିଏ ବର୍ଷ ।"

ରାଜା ଟିକିଏ ଅବାକ୍ ହୋଇଗଲେ । କାରଣ ଲୋକଟିକୁ ସେ ନୂଆ ଦେଖୁଥାନ୍ତି । ପୁଣି ତାର ବୟସ ମଧ୍ୟ ସେପରି କିଛି ବେଶି ନୁହେଁ । ରାଜା ପଚାରିଲେ, "ତୁମର ବୟସ କେତେ ?"
ସୈନ୍ୟଟି ଭଦ୍ରଭାବରେ ଉତ୍ତର ଦେଲା,—"ମାସେ" । ରାଜା ତ ରାଗରେ ନିଆଁ ।

ସେ ଟିକିଏ ବଡ଼ ପାଟିକରି କହିଲେ, "ଆମ ଦୁହିଙ୍କ ଭିତରୁ କେହି ପାଗଳ ନ ହୋଇଥିଲେ ଏପରି କଥା ଶୁଣିବାକୁ ମିଳନ୍ତା ନାହିଁ ।"

ସୈନ୍ୟଟି ଧୀର ଭାବରେ କହିଲା, "ହଜୁର, ଉଭୟେ ।"

ବାଃ, କେମିତି ମଜା !



* ଫରାସୀ ଗଳ୍ପର ମର୍ମାନୁସରଣରେ

## ପରୀକ୍ଷା ପାଟେର

ଚଳିତ ବର୍ଷ ସେପ୍ଟେମ୍ବର ୧୯ ତାରିଖଠାରୁ ଇଉନିୟନ ପବ୍ଲିକ ସର୍ଭିସ କମିଶନ ଉଚ୍ଚ ସରକାରୀ ଚାକିରି ପାଇଁ ଗୋଟିଏ ପ୍ରତିଯୋଗିତାମୂଳକ ପରୀକ୍ଷା କରିବେ । ଏହି ପରୀକ୍ଷା ଏଲାହାବାଦ, ବମ୍ବେ, କଲିକତା, ମାଡ୍ରାଜ, କଟକ, ପାଟନା, ନାଗପୁର, ଦିଲ୍ଲୀ, ସିମଲା ଓ ଲଣ୍ଡନଠାରେ ହେବ । ଏଥିରେ ଉତ୍ତୀର୍ଣ୍ଣ ହେବା ପ୍ରାର୍ଥୀମାନେ ନିମ୍ନଲିଖିତ ଚାକିରିଗୁଡ଼ିକ ପାଇଁ ଯୋଗ୍ୟ ବିବେଚିତ ହେବେ ।

1. The Indian Administrative Service.
2. ,, Foreign Service.
3. ,, Police Service.
4. ,, Audit & Accounts Service.
5. ,, Defence Account Service.
6. ,, Railway Accounts Service.
7. ,, Customs and Excise Service.
8. ,, Income tax Service, Class I.
9. The Transportation.
10. The Indian Postal Service, Class I.
11. The Military Lands and Cantonments Service, Cl. I & II.
12. The Central Secretariat Service, Gr. III.

Assistant Supt. Class II. Gazetted.

ଭାରତୀୟ ପୋଲିସ ସର୍ଭିସ ପାଇଁ ୧।୮।୧୯୫୫ ରେ ବୟସ ୨୦—୨୪ ବର୍ଷ ଭିତରେ ହୋଇଥିବା ଆବଶ୍ୟକ ଅନ୍ୟ ଚାକିରି ପାଇଁ ୨୧—୨୪ ବର୍ଷ । IAS ଓ IFS ପାଇଁ Arts, Science ବା Commerce ଡିଗ୍ରୀ ବା ତତ୍ ସମକକ୍ଷ ଯୋଗ୍ୟତା । ପୂର୍ଣ୍ଣ ବିବରଣୀ ପାଇଁ ଟ ୧୯ ଟି ସହ ସେକ୍ରେଟରୀ, ଇଉନିୟନ ପବ୍ଲିକ ସର୍ଭିସ କମିଶନ, ଡୋଲପୁର ହାଉସ୍, ନୂଆ ଦିଲ୍ଲୀକୁ ଲେଖିବାକୁ ହେବ । ଦରଖାସ୍ତ ଦେବାର ଶେଷ ତାରିଖ ୯-୪-୧୯୫୫ ।

—o—

## ବୁଦ୍ଧି ପରୀକ୍ଷା

୧ । ଜୀବନରେ ଉନ୍ନତି କରିବାକୁ ହେଲେ
(୧) ସର୍ବଦା ଖବର କାଗଜ ପଢ଼ିବ ।
(୨) ଅଧିକ ଫଳ ଖାଇବ ।
(୩) କଠିନ ପରିଶ୍ରମ କରିବ ।
(୪) ତୁମକୁ କେହି କଥା ନ କହିଲେ, ତୁମେ ପାଟି ଫିଟାଇବ ନାହିଁ ।
କେଉଁଟି ଠିକ୍ ଉତ୍ତର କହ ।

୨ । ଗୁପ୍ତଚରରେ ଗୋଟିଏ ଖବର ପଠାଗଲା । ଖବରଟି ହେଉଛି — ଏକୁଟିଆ ଆସିବ । କିନ୍ତୁ ଠାରରେ ହେଲା — ଐଖ୍ୟୁଠିଇ ଇହ୍ୱିଭ ! ଏହି ଠାର ଯେଉଁ ନିୟମରେ ଗଢ଼ା ଯାଇଛି, ସେହି ନିୟମରେ 'ପଇସା' ଶବ୍ଦର ଠାର କଣ ହେବ ?

୩ । ଯଦି କ = ୯, ଖ = ୮, ଗ = ୭ ଏବଂ ଏହି କ୍ରମରେ ଅନ୍ୟ ସବୁ ଅକ୍ଷରର ମୂଲ୍ୟ ହୁଏ, ତେବେ ଘ + ଚ = ? ଖ − ଙ = ?

୪ । ୬୩୩ ଖ୍ରୀ.ପୂ.; ୧୯୪୩; ୧୮୦୦ ; ୬୭ ଖ୍ରୀ:ପୂ: ୧୯୫୩ ; ୧୬୫୦ ; ୩୨୩ ଖ୍ରୀ:ପୂ:; ୧୯୫୪ ଖ୍ରୀ:ପୂ: ।
ଉପରୋକ୍ତ ବର୍ଷମାନଙ୍କ ମଧ୍ୟରୁ ଯେଉଁଟି ସର୍ବାପେକ୍ଷା ଅଲ୍ପଦିନତଳର, ସେହିଠାରୁ ଆରମ୍ଭ କରି ଗୋଟିଏ କ୍ରମରେ ସଜାଅ, ଯେପରି ସର୍ବାପେକ୍ଷା ପୁରାତନ ବର୍ଷଟି ଶେଷରେ ରହିବ ।

୫ । ତଳେ ତିନୋଟି ଶବ୍ଦର ଅର୍ଥ ସୂଚାଇ ଦିଆଯାଇଅଛି । ପ୍ରଥମ ଶବ୍ଦଟି ଗୋଟିଏ ଅକ୍ଷରରେ ହେବ । ସେଇ ଅକ୍ଷର ଡାହାଣରେ ଆଉ ଗୋଟିଏ ଅକ୍ଷର ଦେଲେ ୨ୟଟି ଏବଂ ସେହିପରି ପୁଣି ଗୋଟିଏ ଅକ୍ଷର ଯୋଗ କଲେ ୩ୟଟି ହେବ । ଶବ୍ଦ ତିନୋଟି କଣ ?
(୧) ଗୋଟିଏ ସଂଖ୍ୟା ।
(୨) ଚର୍ମରୋଗ ବିଶେଷ ।
(୩) ଛବିଳ ।

—o—

(୧୯ ପୃଷ୍ଠାର ଅବଶିଷ୍ଟାଂଶ)

ଭାରତସରକାରଙ୍କର ସ୍ଥଳବାହିନୀ, ନୌବାହିନୀ ଓ ଆକାଶବାହିନୀଙ୍କର ଅନେକ ଗୁଡ଼ିଏ ରେଡ଼ାର ଅଛି । ଭାରତର ସ୍ଥଳବାହିନୀଙ୍କର ଆଗ୍ରାଠାରେ ଅବସ୍ଥିତ ଇଲେକ୍‌ଟ୍ରିକାଲ ଓ ମେକାନିକାଲ କାରଖାନାରେ ୧୦ ସେଣ୍ଟିମିଟାରର ଗୋଟିଏ ରେଡ଼ାର ଅଛି । ଏହି ରେଡ଼ାର୍‌ରେ ଟ୍ରେନିଂ ନେବା ସମୟରେ ପ୍ରସିଦ୍ଧ ତାଜମହଲର ଚୂଡ଼ାର ଉଚ୍ଚତା ନିରୂପଣ କରିବାର ସୁଯୋଗ ଲେଖକଙ୍କୁ ମିଳିଥିଲା । କଲକତାର ଇନ୍‌ଷ୍ଟିଚିଉଟ୍ ଅଫ୍ ରେଡ଼ିଓ ଫିଜିକ୍‌ସ ଆଣ୍ଡ୍ ଇଲେକ୍‌ଟ୍ରନିକ୍‌ସରେ ଗବେଷଣା ଉଦ୍ଦେଶ୍ୟରେ ଗୋଟିଏ ରେଡ଼ାର ରଖାଯାଇଛି । ଭାରତର ପାଣିପାଗ ବିଭାଗ ନିକଟଭବିଷ୍ୟତରେ ରେଡ଼ାର ପାଇଁ ଗୋଟିଏ ସ୍ୱତନ୍ତ୍ର ବିଭାଗ ଖୋଲୁଛନ୍ତି ଏବଂ ସିଭିଲ୍ ଆଭିଏସନ୍ ବିଭାଗ ମଧ୍ୟ ଏରୋଡ୍ରମମାନଙ୍କରେ ରେଡ଼ାରମାନ ରଖିବାର ବ୍ୟବସ୍ଥା କଲେଣି । ଆଶାକରିଏ ନିକଟ ଭବିଷ୍ୟତରେ ଭାରତର ପାଣିପାଗ ବିଭାଗର କର୍ତ୍ତୃପକ୍ଷ ରେଡ଼ାରର ସାହାଯ୍ୟ ନେଇ ମେଘମାଳାର ଗତିବିଧି ପର୍ଯ୍ୟବେକ୍ଷଣ କରି କୃତ୍ରିମ ଉପାୟରେ ବର୍ଷା କରିବାର ଚେଷ୍ଟା କରିବେ ।

ଆମେରିକାର ମାସାଚୁସେଟ୍‌ସ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଟେକ୍‌ନୋଲୋଜିର ରେଡ଼ିଏସନ୍ ଲାବୋରେଟୋରି ବର୍ତ୍ତମାନ ପୃଥିବୀରେ ରେଡାର ଗବେଷଣାର ଗୋଟିଏ ପ୍ରଧାନ କେନ୍ଦ୍ର । ଭାରତର ଡିଫେନ୍‌ସନ୍ ସାଇନ୍‌ସ୍ ଅର୍ଗାନାଇଜେସେନରେ ମଧ୍ୟ ଏହା ସମ୍ବନ୍ଧରେ ଗବେଷଣା ଚାଲିଛି ।

ଗତ ମହାଯୁଦ୍ଧର ଖୁବ ଶୀଘ୍ର ସମାଧାନ ହୋଇ ପାରିଥିଲା 'ଆଟମ୍ ବମ୍' ଓ ରେଡାର ସାହାଯ୍ୟରେ । ରେଡାର ନିଜେ ଧ୍ୱଂସ ନ କରି ପାରିଲେ ମଧ୍ୟ ଆଟମ୍‌ବମ୍ ଦ୍ୱାରା କିପରି ଧ୍ୱଂସ ହୋଇ ପାରିବ ତାହାର ଉପାୟ ଦେଖାଇଥିଲା । ଆଣବିକ ଶକ୍ତି ଓ ରେଡ଼ାର ସାହାଯ୍ୟରେ ପୃଥିବୀରେ ଶାନ୍ତି ପ୍ରତିଷ୍ଠା କରି ସଭ୍ୟତାକୁ ଅଗ୍ରସର କରିବାର କ୍ଷେତ୍ର ପ୍ରଶସ୍ତ । ପୃଥିବୀର ବୈଜ୍ଞାନିକମାନଙ୍କୁ ସ୍ୱାଧୀନ ଚିନ୍ତାଧାରା ପରିବେଷଣ କରିବାପାଇଁ ରାଜନୀତିଜ୍ଞ ସୁଯୋଗ ଦିଅନ୍ତୁ । ତାହାହେଲେ ଶାନ୍ତିପ୍ରେମୀ ବୈଜ୍ଞାନିକ ପୃଥିବୀରେ ଚିରଶାନ୍ତି ପ୍ରତିଷ୍ଠା କରିବେ ।

---

# ସୂର୍ଯ୍ୟଙ୍କ ଉତ୍ତାପ କେଉଁଠୁ ଆସୁଛି

ଶ୍ରୀ ଆଶୀର୍ବାଦ ମହାନ୍ତି

ଆମ୍ଭେମାନେ ପ୍ରତିଦିନ ସୂର୍ଯ୍ୟଙ୍କୁ ପ୍ରାଚୀ ଗଗନରେ ଉଦିତ ହେବାର ଦେଖୁ ଏବଂ ଦିନ ତମାମ ସୂର୍ଯ୍ୟ କିରଣ ଉପଭୋଗ କରିଥାଉଁ । ଏହି ସୂର୍ଯ୍ୟ କିରଣ ବିନା ପ୍ରାଣୀ ଜଗତ ବଞ୍ଚିବା ଅସମ୍ଭବ । ଏହି ସୂର୍ଯ୍ୟଙ୍କଠାରୁ ବହୁ ଉପକାର ପାଉଥିବାରୁ ମାନବ ସମାଜ ସୂର୍ଯ୍ୟଙ୍କୁ ଦେବତାରୂପେ ବହୁ ପୁରାକାଳରୁ ପୂଜା କରି ଆସୁଛି । ପ୍ରାତଃରୁ ସ୍ନାନ ସାରି ଲୋକେ ସୂର୍ଯ୍ୟଙ୍କ ମନ୍ତ୍ରପାଠ କରି ସୂର୍ଯ୍ୟଙ୍କୁ ପ୍ରଣିପାତ କରିଥାନ୍ତି । ଦୈନନ୍ଦିନ ଆମେ ଏହି ସୂର୍ଯ୍ୟ କିରଣରେ ମଜ୍ଜିଥିଲେ ସୁଦ୍ଧା ସୂର୍ଯ୍ୟଙ୍କ କିରଣ ବିଷୟରେ ଚିନ୍ତା କରିବାକୁ ଦିନେ ସମୟ ପାଉନୁ । ସୂର୍ଯ୍ୟଙ୍କ କିରଣ ଆମ ପାଖକୁ କିପରି ଆସୁଛି, କିପରି ବା ସୂର୍ଯ୍ୟ କିରଣ ବର୍ଷଣ କରୁଛନ୍ତି, ଏ କଥା ଚିନ୍ତା କରିବାକୁ ଦିନେ ସମୟ ପାଉନୁ । ଯଦିଓ କେହି ଚିନ୍ତା କରି ଦେଖନ୍ତି—ଏ ବିଷୟରେ କିଛି ଆଦି ଅନ୍ତ ପାଆନ୍ତି ନାହିଁ । ସୂର୍ଯ୍ୟ କିପରି କିରଣ ଦିଅନ୍ତି ଆଜି ସେହି କଥା ଆଲୋଚନା କରିବା ।

ଆଜକୁ ଶତ ଶତ ନିଯୁତ ବର୍ଷ ହେବ ସୂର୍ଯ୍ୟଙ୍କର ସୃଷ୍ଟି ହୋଇଛି । ଏହି ସୃଷ୍ଟି ହେବା ଦିନରୁ ସୂର୍ଯ୍ୟ ସମଔଜ୍ଜ୍ୱଲ୍ୟ ଓ ସମଶକ୍ତିରେ କିରଣ ଦେଇ ଆସୁଛନ୍ତି । ଏହା କେବେ ଏବଂ କିପରି ଆରମ୍ଭ ହେଲା, ପ୍ରକୃତରେ କେହି ଜାଣନ୍ତି ନାହିଁ । ପୁରାତନ ବୈଜ୍ଞାନିକମାନେ ଏ ବିଷୟରେ ଗବେଷଣା କରି ବହୁ ତଥ୍ୟ ବାହାର କରିଛନ୍ତି । ଅଧୁନିକ ବିଖ୍ୟାତ ପଦାର୍ଥବିତ୍‌ମାନେ ପୌରାଣିକ ଗଳ୍ପମାନଙ୍କରୁ ବହୁ

ତଥ୍ୟ ବାହାର କଲେଣି, ତଥାପି ସେମାନେ କହି ପାରୁ-ନାହାନ୍ତି, ଏହା କେବେ ଏବଂ କିପରି ଆରମ୍ଭ ହେଲା। ନିଉକ୍ଲିୟାର (Nuclear) ପଦାର୍ଥ ବିଦ୍ୟାର ବହୁ ଅଗ୍ର-ଗତି ହେଲଣି। ତଥାପି ଆମ ଏହି ସଭ୍ୟତାରେ ଏତିକି ମାତ୍ର ପ୍ରମାଣିତ ହୋଇଛି ଯେ, ସୂର୍ଯ୍ୟ ମଣ୍ଡଳ ଯିବାର ଚିହ୍ନ ନ ଦେଖାଇ, ଉତ୍ତାପ ଏବଂ ଆଲୋକ ବୃଦ୍ଧି କରିବାରେ ଲାଗି ପଡ଼ନ୍ତି। ଆଲୋକ ବିକିରଣ (Radio activity) ଆଜକୁ ୫୦ ବର୍ଷ ହେବ ଆବିଷ୍କାର ହେଲାଣି। କେବଳ ବୈଜ୍ଞାନିକମାନେ ଜାଣନ୍ତି ଯେ, ବିଭିନ୍ନ ପ୍ରକାର ଅଣୁର କେନ୍ଦ୍ରାଂଶରେ ବହୁ ପରିମାଣ ଲୁପ୍ତ ଶକ୍ତି ନିହିତ ଅଛି ଯାହା ଜନ କେହି କଳ୍ପନା ସୁଦ୍ଧା କରି ପାରିବେ ନାହିଁ। ସେହି ଶକ୍ତି ସାଧାରଣ ରାସାୟନିକ ପ୍ରକ୍ରିୟାରେ ଜାତ ହେଉଥିବା ଶକ୍ତି ଅପେକ୍ଷା ବହୁ ନିୟୁତ ବୃହତ୍ତର। ଏହି କେନ୍ଦ୍ରିକ ଶକ୍ତି (Nuclear energy) ପାଇବା ବଡ ଦୁରୂହ ବ୍ୟାପାର। ଯେ କୌଣସି ପଦାର୍ଥ ନେଇ ଭାବି ଦେଖନ୍ତୁ। ଧରନ୍ତୁ ଖଣ୍ଡେ ଲୁହା ଏବଂ ଏକବୁନ୍ଦା ଜଳ। ଏଗୁଡ଼ିକ ବହୁ କେନ୍ଦ୍ରିକ ଶକ୍ତି ଧାରଣ କରିଛନ୍ତି କିନ୍ତୁ ଆମେ ଏ ପର୍ଯ୍ୟନ୍ତ ଶିକ୍ଷା କରି ପାରିଲୁନି ଏଗୁଡ଼ିକ କିପରି ମୁକ୍ତ ହୁଅନ୍ତି। ସାମାନ୍ୟ ପରିମାଣ ରେଡିଅମ (Radium) ଏବଂ ୟୁରେନିଅମ୍ (Uranium), ମୌଳିକ ପଦାର୍ଥର କଥା ଧରାଯାଉ। ଏଗୁଡିକ ମଧ୍ୟ ବହୁ ଶକ୍ତି ଧାରଣ କରିଛନ୍ତି। ରେଡ଼ିଅମ ଏବଂ ୟୁରେନିଅମ ତାପ ବିକିରଣ କରନ୍ତି। ଏଗୁଡ଼ିକ ନିଜେ ନିଜେ ବିଶ୍ଳିଷ୍ଟ ହେବା ଫଳରେ ଅତ୍ୟଧିକ ପରିମାଣ ତାପ ସୃଷ୍ଟି କରେ। ଅଧୁନା ବୈଜ୍ଞାନିକମାନେ ୟୁରେନିଅମର କୈନ୍ଦ୍ରିକ ଶକ୍ତି ତିଆରି କଲେଣି। ଏହି କୈନ୍ଦ୍ରିକ ଶକ୍ତି ସାମାନ୍ୟ ଶକ୍ତିଶାଳୀ ବିସ୍ଫୋରକ ରୂପରେ ଶକ୍ତି ତ୍ୟାଗ କରେ, ଠିକ୍ ସିମିତି ଅଣୁ ବିସ୍ଫୋରକ ଗୋଳା (Atom bomb) ବିସ୍ଫୋରଣ କରେ।

ସାଧାରଣ ମୌଳିକ ପଦାର୍ଥର କୈନ୍ଦ୍ରିକ ଶକ୍ତିକୁ ପ୍ରଜ୍ଜ୍ୱ-ଳିତ କରିବାପାଇଁ ଯଥେଷ୍ଟ ପରିମାଣରେ ଉତ୍ତାପ ଦରକାର ହୁଏ। ସେହି ପରିମାଣ ଉତ୍ତାପ ଉତ୍ପନ୍ନ କରି ହୁଏ ନାହିଁ। ଅନ୍ୟାନ୍ୟ ତାରାଗୁଡିକରେ ନିୟୁତରୁ ଆରମ୍ଭ କରି ଅନେକ ନିୟୁତ ପରିମିତ ଉତ୍ତାପ ନିହିତ ଅଛି। ସୂର୍ଯ୍ୟରେ ମଧ୍ୟ ସେହି ଶହ ଶହ ଡିଗ୍ରୀ ପରିମିତ ଉତ୍ତାପ ରହିଛି। ପୃଥିବୀ ଯେପରି ଅଧିକାଂଶ ସମ୍ଭବତଃ ମୌଳିକ ପଦାର୍ଥ ଧାରଣ କରିଛି, ସୂର୍ଯ୍ୟରେ ମଧ୍ୟ ସେହି ସବୁ ପଦାର୍ଥ ରହିଛି। ଏଥିରେ କିଛି ସନ୍ଦେହ ନାହିଁ। ସୂର୍ଯ୍ୟରେ କି କି କାର୍ଯ୍ୟ ଘଟୁଛି, ବୈଜ୍ଞାନିକମାନେ ଗାଣିତିକ ଗଣନା ଏବଂ ବିଜ୍ଞାନ ଗବେଷଣା-ଗାରର ପରୀକ୍ଷାଦ୍ୱାରା ବହୁ ପରିମାଣରେ ଜାଣି ପାରିଛନ୍ତି। ଅବଶ୍ୟ ସେମାନେ ଏହା ସରଳଭାବରେ କହିଛନ୍ତି। ତଥାପି ଏଥିରୁ ଜଣାଯାଏ ଯେ, ସୂର୍ଯ୍ୟ ନିଜେ ଗୋଟିଏ ଅଣୁପେଷକ ଯନ୍ତ୍ର। ଅର୍ଥାତ୍ ସୂର୍ଯ୍ୟ ଅଣୁ ପ୍ରସ୍ତୁତ କରିବାରେ ଲାଗିଛନ୍ତି ବା ପଦାର୍ଥକୁ ଧ୍ୱଂସ କରିବାରେ ଲାଗିଛନ୍ତି। ପ୍ରସିଦ୍ଧ ବୈଜ୍ଞାନିକ ଆଇନଷ୍ଟାଇନ କହନ୍ତି ଯେ କୌଣସି ପଦାର୍ଥ ଧ୍ୱଂସ ପ୍ରାପ୍ତ ହେଲେ ସେଥିରୁ କଳ୍ପନାତୀତ ଭାବେ ତାପ ଜାତ ହୁଏ। ସୂର୍ଯ୍ୟ ମଣ୍ଡଳର ପଦାର୍ଥ ଗୁଡ଼ିକ ଧ୍ୱଂସ ପାଇ ଆଣବିକ ଗଠନରେ (atomic structure) ପରିବର୍ତ୍ତନ ହେବା ଫଳରେ ସୂର୍ଯ୍ୟତାପରେ ସୃଷ୍ଟି ହୋଇଛି। ଏଗୁଡ଼ିକ ଅଙ୍ଗାରାମ୍ଳ-ଜାନ, ଅଙ୍ଗାର, ଯବକ୍ଷାରଜାନ ଏବଂ ହିଲିଅମ୍। ଏହି ଚାରି-ଗୋଟି ସାଧାରଣ ରାସାୟନିକ ମୌଳିକ ପଦାର୍ଥର କୈନ୍ଦ୍ରିକ ପ୍ରତିକ୍ରିୟା ମାଧ୍ୟମ ଦେଇ ହୋଇଥାଏ। ଏହିମାନଙ୍କ ଦ୍ୱାରାହିଁ ସୂର୍ଯ୍ୟଙ୍କର ଆଲୋକ ଏବଂ ଉତ୍ତାପ ବୃଦ୍ଧି ପାଇଥାଏ।

ଅନ୍ୟାନ୍ୟ କେତେକ ବୈଜ୍ଞାନିକଙ୍କ ମତରେ ସୂର୍ଯ୍ୟ-ମଣ୍ଡଳର ବାଷ୍ପ ନିମ୍ନଗାମୀ ଓ ଊର୍ଦ୍ଧ୍ୱଗାମୀ ହୋଇ ପରି-ଚାଳନ ସ୍ରୋତ ସୃଷ୍ଟି କରେ। ବାଷ୍ପ ନିମ୍ନଗାମୀ ହେବାଦ୍ୱାରା ତାହା ସଙ୍କୁଚିତ ହୁଏ। ଯେ କୌଣସି ବାଷ୍ପ ସଙ୍କୁଚିତ ହେଲେ ତାପ ସୃଷ୍ଟି ହୁଏ, ତେଣୁ ସୂର୍ଯ୍ୟମଣ୍ଡଳର ବାଷ୍ପ ସଙ୍କୁଚିତ ହେବାଦ୍ୱାରା ସୂର୍ଯ୍ୟ ତାପର ସୃଷ୍ଟି ହୁଏ ବୋଲି ଅନୁମାନ କରାଯାଏ।

ପୁନଶ୍ଚ ଦେଖିବାକୁ ଗଲେ, କୈନ୍ଦ୍ରିକ ପ୍ରତିକ୍ରିୟା ଛଅ ସ୍ତରରେ ବୃତ୍ତ ନିର୍ମାଣ କରେ, ଯେଉଁଥିରେ କି ହାଇଡ୍ରୋ-ଜେନର କୈନ୍ଦ୍ରିକ ଶକ୍ତି ହିଲିଅମର କେନ୍ଦ୍ରିକ ଶକ୍ତିରେ ପରିଣତ ହୁଏ ଏବଂ ଏହି ପ୍ରଣାଳୀ ଦ୍ୱାରା ସୂର୍ଯ୍ୟ ଅକ୍ଲେଶରେ କେନ୍ଦ୍ରିକ ଶକ୍ତି ତ୍ୟାଗ କରେ। ସମ୍ପୂର୍ଣ୍ଣ ବୃତ୍ତର କାର୍ଯ୍ୟ ଶେଷ ହେବାକୁ ୬,୫୦୦,୦୦୦ ବର୍ଷ ସମୟ ଲାଗେ ଏବଂ ଯେଉଁ ମୁହୂର୍ତ୍ତରେ ଗୋଟିକର କାର୍ଯ୍ୟ ଶେଷ ହୁଏ ଅନ୍ୟ ଗୋଟିକର କାର୍ଯ୍ୟ ସେହି ମୁହୂର୍ତ୍ତରେ ଆରମ୍ଭ ହୁଏ। ସୂର୍ଯ୍ୟରେ ଏଇ ଯେଉଁ ପ୍ରଣାଳୀ ଚାଲିଛି, ହୁଏତ ସୂର୍ଯ୍ୟରେ ଅଙ୍ଗାରାମ୍ଳ-ଜାନ ଥିବାଯାଏ ଏହି କାର୍ଯ୍ୟ ନାତିଦୀର୍ଘ କାଳପାଇଁ ଚାଲିବାର ଆଶା କରାଯାଏ। ଗଣନା କରି ଦେଖା ଯାଇଛି ଯେ ସୂର୍ଯ୍ୟରେ ଯଥେଷ୍ଟ ପରିମିତ ଅଙ୍ଗାରାମ୍ଳଜାନ ଜାଳେଣୀ ରହିଛି। ଏହି ଅଙ୍ଗାରାମ୍ଳଜାନ ଜାଳେଣୀ, ସୂର୍ଯ୍ୟଙ୍କର ଉଜ୍ଜ୍ୱଳ କିରଣ ଦେବା ପ୍ରଥାକୁ ଏକାଦିକ୍ରମେ ଅନ୍ୟ ଦଶ ଲକ୍ଷ କୋଟି ବର୍ଷ ପର୍ଯ୍ୟନ୍ତ ସଜାଗ ରଖିବ।




୧ । ଅପ୍ରେଲ ପହିଲଠାରୁ ସମସ୍ତ ଭାରତୀୟ ରେଲ-ବାଇରୁ ମଧ୍ୟମ ଶ୍ରେଣୀ ଉଠାଇ ଦିଆଗଲା ଏବଂ ନିମ୍ନ-ଲିଖିତ ଚାରୋଟି ଶ୍ରେଣୀ ରଖାଗଲା—ଶୀତାତପ ନିୟନ୍ତ୍ରିତ, ପ୍ରଥମ, ଦ୍ୱିତୀୟ ଏବଂ ତୃତୀୟ ।

୧ରୁ ୫୦ ମାଇଲ ଦୂରତ୍ୱ ପର୍ଯ୍ୟନ୍ତ ତୃତୀୟ ଶ୍ରେଣୀ ଭଡ଼ାର କୌଣସି ପରିବର୍ତ୍ତନ ହେବ ନାହିଁ ଅର୍ଥାତ୍ ୫ ପାହି କରି ପଡ଼ିବ । ମାତ୍ର ୫୦ ମାଇଲରୁ ଅଧିକା ହେଲେ ଅଧିକା ପାଇଁ ପ୍ରତି ମାଇଲକୁ ୫½ ପାହି କରି ପଡ଼ିବ ।

ଶୀତାତପ ଶ୍ରେଣୀରେ ୬୦ସେର ; ପ୍ରଥମ ଶ୍ରେଣୀରେ ୪୦ସେର ; ୨ୟ ଶ୍ରେଣୀରେ ୩୦ ଏବଂ ତୃତୀୟ ଶ୍ରେଣୀରେ ୨୫ ସେର ମାଲ ବିନା ଭଡ଼ାରେ ନେଇ ହେବ ।

୨ । ୧୯୫୩-୫୪ରେ ଭାରତର ବିଭିନ୍ନ ୧୨ଟି ଫ୍ଲାଇଂ କ୍ଲବ୍‌ରେ ୧୬୧ ଜଣ ପାଇଲଟ୍ ତାଲିମ ହୋଇଛନ୍ତି ।

୩ । ଉତ୍ତରମେରୁ ବରଫାବୃତ ସମୁଦ୍ର ଉପରେ ଏବଂ ଦକ୍ଷିଣମେରୁ ୯୫୦୦ ଫୁଟ ଉଚ୍ଚ ବରଫାବୃତ ଭୂଭାଗ ଉପରେ ଅବସ୍ଥିତ ।

୪ । ଭାରତରେ ବର୍ଷକୁ ୫ଲକ୍ଷ ଟଙ୍କାରୁ ଅଧିକ ଆୟ କରୁଥିବା ଲୋକଙ୍କ ସଂଖ୍ୟା ମୋଟେ ୧୨୦ । ଏମାନଙ୍କ ମଧ୍ୟରୁ ୭୪ ଜଣ ବାର୍ଷିକ ୫ଲକ୍ଷରୁ ୭ଲକ୍ଷ ଏବଂ ୪୬ଜଣ ୭ଲକ୍ଷରୁ ୧୦ଲକ୍ଷ ଆୟ କରନ୍ତି ।

ଜଣେ କିମ୍ବା ଦୁଇଜଣ ଅଛନ୍ତି ଯେ କି ୧୦ଲକ୍ଷରୁ ଅଧିକ ଆୟ କରନ୍ତି ।

୫ । ନିମ୍ନଲିଖିତ କାର୍ଯ୍ୟଗୁଡ଼ିକ କଲେ ମନୁଷ୍ୟ ୧୫୦ ବର୍ଷରୁ ୧୭୫ ବର୍ଷ ପର୍ଯ୍ୟନ୍ତ ବଞ୍ଚି ପାରିବ ବୋଲି ରୁଷିଆର ପ୍ରଫେସର ଏର୍କିସ୍କିନ କହିଛନ୍ତି— ବିବେକାନୁମୋଦିତ କାର୍ଯ୍ୟ କରିବା, ଅଧିକ ପରିଶ୍ରମ ନ କରିବା, ଛୁଟି ଦିନମାନଙ୍କରେ ପୂର୍ଣ୍ଣ ବିଶ୍ରାମ ଉପଭୋଗ କରିବା, ୮ଘଣ୍ଟା ଶୋଇବା, ପ୍ରତିଦିନ ୧୦ରୁ ୨୦ ମିନିଟ ପର୍ଯ୍ୟନ୍ତ ଶାରୀରିକ ପରିଶ୍ରମ କରିବା, ଦିନରେ ୩ ବା ୪ଥର ଖାଇବା, ନିଶାଦ୍ରବ୍ୟ ଓ ଧୂଆଁ ନ ଖାଇବା, ପ୍ରତ୍ୟହ ମୁକ୍ତବାୟୁରେ ଭ୍ରମଣ ଏବଂ ଆବଶ୍ୟକ ପରିମାଣରେ ଗାଧୋଇବା ।

—○—

## ଖାଟି ସୁଆଦ

"ଆପଣ କାହିଁକି ବିବାହ କଲେ ନାହିଁ ?"

"କଥାଟା ହେଉଛି, ମୁଁ ଯେତେବେଳେ ଯୁବକ ଥିଲି, ସେତେବେଳେ ପ୍ରତିଜ୍ଞା କଲି ମୋ ମନମୁତାବକ ଆଦର୍ଶ ଗୃହିଣୀ ନ ପାଇବାଯାଏ ବିବାହ କରିବି ନାହିଁ । ବହୁତ ଖୋଜି ଖୋଜି ଶେଷକୁ ଅବଶ୍ୟ ଜଣକୁ ପାଇଲି । କିନ୍ତୁ ସେ ଖୋଜୁଥିଲେ ଜଣେ ଆଦର୍ଶ ପୁରୁଷ !"

× × ×

କାଲି ଯାଇଥିଲା ଡାକ୍ତରଙ୍କ ପାଖକୁ ଚିକିତ୍ସା ପାଇଁ; ଚିକିତ୍ସା ସରିଲା । ଡାକ୍ତର ତାଙ୍କ ଫିସ୍ ମାଗିଲେ । କାଲି ପଚାରିଲା, 'କେତେ ଦେବାକୁ ହେବ ?'

ଡାକ୍ତର— "ପଚିଶ ଟଙ୍କା"

କାଲି — "ପଚିଶ ଟଙ୍କା ? ନା କେତେ କହିଲେ ?"

ଡାକ୍ତର ( ବଡ଼ପାଟିରେ ). "ନା, ପଚିସ୍ତରି ଟଙ୍କା ।"

× × ×

"ତୁମେ ୬ମାସର ଭଡ଼ା ବାକି ରଖିଲଣି । ଆଉ ମୋ ଘରେ ରହିପାରିବ ନାହିଁ । ଘର ଛାଡ଼ ।"

"କଣ ! ଭଡ଼ା ନ ଦେଇ ଚାଲିଯିବି ? ଛି ଛି ! ମୁଁ ସେମିତି ଦଗାବାଜି କାମ କରିବି ନାହିଁ ।"

—○—



ଲେ—ବାପ୍ସା

ଗତ ମାର୍ଚ୍ଚ ୨୫ ତାରିଖର ଏକ ଇଂରାଜ ଦୈନିକ ପତ୍ରରେ 'Pandemonium in Orissa Assembly' ଶିରୋନାମା ଦେଖି ଓଡ଼ିଶାର କଣ ଗୋଟିଏ ସୁସମ୍ବାଦ ବୋଲି ଅନୁମାନ କରି ଅଳ୍ପ ଶିକ୍ଷିତ ଯୁବକମାନେ ଡିକ୍‌ସନାରୀ ଲେଉଟାଇ ଦେଖିଲାବେଳକୁ ସେ ବଡ଼ ଇଂରାଜୀଶବ୍ଦର ଅର୍ଥ ମିଳିଲା hell ବା 'ନରକ' ଅର୍ଥାତ୍ 'ଓଡ଼ିଶା ଆସେମ୍ବ୍ଲିରେ ନାରକୀୟ କାଣ୍ଡ'।

କେତେ ସଭ୍ୟ ଏତେ ପାଟିତୁଣ୍ଡ କଲେ ଯେ ସେଦିନ ମାନ୍ୟବର ବାଚସ୍ପତି ସଭା ବନ୍ଦ କରିବାକୁ ବାଧ୍ୟ ହୋଇଥିଲେ ।

ଭାଗ୍ୟରେ ଥିଲେ ଏଭଳି ଦୃଶ୍ୟ ଦେଖିବାକୁ ମିଳେ ! *

ଭାରତୀୟ ବଲ୍‌ଟା ସାରା ଓଡ଼ିଶା କାହିଁକି ଓଡ଼ିଶା ବାହାରେ ବି ଚହଳ ପକାଇ ଦେଇଛି । ଚାରିଆଡ଼େ ବାଦ ପ୍ରତିବାଦ, ପ୍ରସ୍ତାବ, ଗର୍ଜନ ତର୍ଜନ । ମୁଖ୍ୟମନ୍ତ୍ରୀଙ୍କ ଉପରେ ଏତେ ବଡ଼ ଝଡ଼ଟାଏ ବୋଧହୁଏ ପୂର୍ବରୁ କେହି ନ ଥିଲା । କିନ୍ତୁ ସେ ଅଟଳ ରହିଛନ୍ତି ।

ମାଟି, ପାଣି, ପବନ ତିନୋଟି କଥା । ପହିଲି ଥର ମାଟିର ପାଳି ପଡ଼ିଲା । ଆରଥରକୁ ପଡ଼ିବ ପାଣିର ପାଳି ! ନଈ, ପୋଖରୀ, କୂଅ ଆଦି ଯେତେ ଜଳାଶୟ ଏ ରାଜ୍ୟରେ ଅଛି, ତା ଉପରୁ ମାଲିକାନା ସତ୍ତ୍ୱ ପ୍ରାୟ ଉଠିଯିବ । ଶେଷଥରକୁ ପବନ ବିଲ ଆଗତ ହେବ । ଏହାଫଳରେ ସାଇକେଲ, ମଟର, ଏରୋପ୍ଲେନ, କଳପଙ୍ଖା ଏ ଆଦି ଯେତେ ପବନ ସାହାଯ୍ୟରେ ଚାଲିବା କଳ ଅଛି, ତା ଉପରେ କେହି ମାଲିକ ରହିବେ ନାହିଁ ।

ସେତେବେଳେ ବାପ୍ସାର ଚିନ୍ତା ପଡ଼ିବ । ତା ବସାଖଣ୍ଡି ଆଉ ଦୋହଲିପାରିବ ନାହିଁ । ତେବେ ଇଲେ ୧୫ ବର୍ଷ ଅଛି ! *

ମାର୍ଚ୍ଚ ୨୦ ତାରିଖରେ ପାକିସ୍ଥାନର ସିନ୍ଧ ପ୍ରଦେଶର ମନ୍ତ୍ରୀମାନଙ୍କୁ ହତ୍ୟାକରିବା ଉଦ୍ଦେଶ୍ୟରେ ଏକ ଷଡ଼ଯନ୍ତ୍ର ଧରାପଡ଼ିବା ସମ୍ବାଦ ପ୍ରକାଶ ପାଇଲା । ତା ପଛେ ପଛେ ଜରୁରୀ ଅବସ୍ଥା ଘୋଷଣା !

ପାକିସ୍ଥାନର ଅବସ୍ଥା ଦେଖି ଭାରତ ଇତିହାସର ପଠାଣ ରାଜତ୍ୱ, ଅଧ୍ୟାୟ ଗ୍ରୀକ ପିଲାଙ୍କର ସହଜରେ ମନେ ରହିଯାଉଛି । *

ପୁରୀଠାରେ ମହାସମାବେଶରେ ସର୍ବୋଦୟ ସମ୍ମିଳନୀ ଅନୁଷ୍ଠିତ ହେଲା । କେହି କେହି ସଭ୍ୟ ପ୍ରସ୍ତାବ କରିଛନ୍ତି, ଭୂଦାନ ସାଙ୍ଗେ ସାଙ୍ଗେ 'ସମ୍ପତ୍ତିଦାନ' ଆନ୍ଦୋଳନ ଚାଲୁ କରାଯାଉ । ଭୂମିହୀନ ଲୋକମାନେ ଯେଉଁ ଭୂମି ପାଇବେ, ତାକୁ ଚାଷ କରିବାକୁ ସେମାନଙ୍କ ହାତରେ ପାଣ୍ଠି ନାହିଁ । ତେଣୁ 'ସମ୍ପତ୍ତି-ଦାନ ଯଜ୍ଞ'ରୁ ଯେଉଁ ସମ୍ପତ୍ତି ଲାଭ ହେବ, ତାର କିୟଦଂଶ ସେମାନଙ୍କୁ ଦିଆଯିବ ।

ଆମର ଆଶୀର୍ବାଦ ବାକ୍ୟ ପୂର୍ବରୁ ଅଛି 'ଧନ-ଜନ-ଗୋପ-ଲକ୍ଷ୍ମୀ' । ସମସ୍ତଙ୍କ ଘରେ ହଡ଼ା ମଡ଼ିଆ ହୋଇ ହଲେ ଅଧେ ଗାଈ ବା ଗୋରୁ ଅଛନ୍ତି । ଧନ ତ କିଛି ଦିଆଯିବ ; ଭୂମିରୁ ଧାନ ବା ଲକ୍ଷ୍ମୀ ଲାଭହେଲା । କେବଳ ରହିଯାଉଛି 'ଜନ' । ଯାହାଘରେ ମଣିଷ ଅଭାବ, ତା ପାଇଁ ବ୍ୟବସ୍ଥା କରିବା ଦରକାର । ତେଣୁ 'ମନୁଷ୍ୟ-ଦାନ' ଆନ୍ଦୋଳନ ଶୀଘ୍ର ଆରମ୍ଭ ହେଉ । ରାମରାଜ୍ୟ ପୂରା ପଡ଼ିବ । *

ପୁରୀରେ ଜେଲ କଏଦୀମାନଙ୍କ 'ପରିବର୍ତ୍ତନ' ନାଟକ ଅଭିନୟରେ ସେମାନଙ୍କର ସାମୟିକ ପରିବର୍ତ୍ତନ ଆସିଥିବା ସମ୍ବାଦ ପ୍ରକାଶ ପାଇଛି । ନାଟକ ଅଭିନୟର କରାମତି ବାସ୍ତବିକ ଅଦ୍ଭୁତ । ଯେଉଁ କାର୍ଯ୍ୟ ଆପାତତଃ କଠିନ ବା ଅସାଧ୍ୟ ବୋଧ ହେଉଥାଏ, ତାକୁ ଅଭିନୟ ଛଳରେ କାର୍ଯ୍ୟକାରୀ କରାଇଲେ ସୁସାଧ୍ୟ ହୋଇଯାଏ ।

ନିର୍ବାଚନ ପ୍ରଚାର ଉଦ୍ଦେଶ୍ୟରେ ଏହି ପନ୍ଥାର ପ୍ରୟୋଗ ପରୀକ୍ଷା କରାଯାଇ ପାରେ । ନାଟକ ଲେଖକମାନେ ଆଜିଠୁଁ ଲାଗି ପଡ଼ିବା ଆବଶ୍ୟକ ।



ସ୍ନେହର ସାନ ଭାଇଭଉଣୀମାନେ !

ଏ ମାସର ଶୁଭେଚ୍ଛା ନେବ । ତୁମମାନଙ୍କଠାରୁ ପତ୍ର ଇତ୍ୟାଦି ପାଇ ମୋର ଯେଉଁ ଆନନ୍ଦ ଜାତ ହେଲା, ତାହା ଅବ୍ୟକ୍ତ । ତୁମେମାନେ ପୂର୍ଣ୍ଣପ୍ରାଣରେ ମୋ ସହ ସହଯୋଗ କଲେ ଅତି ଶୀଘ୍ର ଆମେ ଏକୀଭୂତ ହୋଇ ବିଶ୍ୱଟିକୁ ସମୃଦ୍ଧ କରି ପାରିବା ।

ତୁମମାନଙ୍କର ପରୀକ୍ଷା ପାଖେଇ ଆସିଲା । ଏ ମାସରେ ଅନ୍ୟ କିଛି କାର୍ଯ୍ୟ ପ୍ରତି ଦୃଷ୍ଟି ନ ଦେଇ ପଢ଼ାପଢ଼ିରେ ଲାଗିଯାଅ । ସଫଳତା ସୁନିଶ୍ଚିତ ।

ହଉ, ଏଥରକ ପାଇଁ ଏତିକିରେ ରହିଲି ।

ଜୟହିନ୍ଦ୍ ।

ତୁମମାନଙ୍କର ସ୍ନେହର

ସୁନ୍ଦରଭାଇ

## ତୁମେମାନେ ସଭ୍ୟ ହେଲ—

(୧) ସହଦେବ ସାହୁ, ୯ମ, ପି. ପି. ହାଇସ୍କୁଲ, କାଶୀରପୁର, କଟକ । (୨) ଅଖିଳମୋହନ ପଟ୍ଟନାୟକ C/o ମନମୋହନ ପଟ୍ଟନାୟକ, ଜାଗମରା, ପୋଃ ଖଣ୍ଡଗିରି, ନୂଆରାଜଧାନୀ, ପୁରୀ । (୩) ସୂର୍ଯ୍ୟମଣି ବେହେରା, ଉଦଳା ହାଇସ୍କୁଲ, ୯ମ, ଉଦଳା, ମୟୂରଭଞ୍ଜ, (୪) ପ୍ରାଣକୃଷ୍ଣ ରଥ ( ଉପର ଠିକଣା); (୫) ପ୍ରଭାସ ଚନ୍ଦ୍ର ଦାସ, ୧୦ମ, ଉପର ଠିକଣା । (୬) ହଲଧର ମିଶ୍ର, C/o ପ୍ରିନ୍ସିପାଲ, ଗଜପତି କଲେଜ, ପାରଳା ଖେମୁଣ୍ଡି, ଗଞ୍ଜାମ । (୭) ରାମଚନ୍ଦ୍ର ସାହୁ, ୯ମ (ଖ), ପିପୁଲସ୍ ହାଇସ୍କୁଲ, ବୁଗୁଡ଼ା, ଗଞ୍ଜାମ । (୮) ନିତ୍ୟାନନ୍ଦ ଦାଶ, ସି. ଆର. ଏସ୍. ହାଇସ୍କୁଲ, ୧୦ମ, ତିହିଡ଼ି, ବାଲେଶ୍ୱର । (୯) ବିଶ୍ୱନାଥ ଘୋଷ, ବଙ୍ଗାଳିସାହି; ରେମୁଣା, ବାଲେଶ୍ୱର (୧୦) ମକରଧ୍ୱଜ ଦେହୁରୀ, ୮ମ, ଯୋଗୀନ୍ଦ୍ର ଦେବ ହାଇସ୍କୁଲ, ବଉଦରାଜ, ବଉଦ । (୧୧) ଆର୍ତ୍ତତ୍ରାଣ ପୁରୋହିତ, ୧୦ମ (ଖ), ପୃଥ୍ୱୀରାଜ ହାଇସ୍କୁଲ, ବଲାଙ୍ଗୀର । (୧୨) ବିଜୟାନନ୍ଦ କରଣ, ନଡ଼ପୁର, ବୈଶିଙ୍ଗା, ମୟୂରଭଞ୍ଜ । (୧୩) ଉଇଲିୟମ ମନ୍ତ୍ରୀ, ମକରବା ଖ୍ରୀଷ୍ଟିଆନ ସାହି, ବକ୍ସି ବଜାର, କଟକ ୧ । (୧୪) ଗଣେଶ୍ୱର ମିଶ୍ର, ପୁରୀ । (୧୫) ଦୁର୍ଗାଚରଣ ଦାସ, C/o କ୍ଷେତ୍ର ମୋହନ ଦାସ, ସୁତରଭାଇଜର, ପୋଷ୍ଟ ଅଫିସ, ପୁରୀ । (୧୬) ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକ, C/o ଗୁରୁଚରଣ ପଟ୍ଟନାୟକ, ଭାରତୀମଠ ଗଳି, କୁଣ୍ଡାଇ ବେଣ୍ଟ ସାହି, ପୁରୀ । (୧୭) ନନ୍ଦକିଶୋର ମହାନ୍ତି, C/o ଡି. ପି. ମହାନ୍ତି ( ଆଡ୍‌ଭୋକେଟ୍ ), ବାରିପଦା, ମୟୂରଭଞ୍ଜ । (୧୮) ଦେବେନ୍ଦ୍ର ବିଜୟ ଉପାଧ୍ୟାୟ, ଶରତ ଚନ୍ଦ୍ର ବିଦ୍ୟାପୀଠ, ୮ମ, ବାରିପଦା, ମୟୂରଭଞ୍ଜ । (୧୯) ଅଶ୍ୱିନୀକୁମାର ମିଶ୍ର, C/o ଡଃ. ଏସ୍. ମିଶ୍ର, ବେତନଟୀ, ମୟୂରଭଞ୍ଜ । (୨୦) ଦିବାକର ମହାନ୍ତି, କରଂଜିଆ ହାଇସ୍କୁଲ, ୧୦ମ ଶ୍ରେଣୀ । (୨୧) ଶିଶିରଚନ୍ଦ୍ର ବେହେରା, କରଂଜିଆ ହାଇସ୍କୁଲ, ୮ମ ଶ୍ରେଣୀ ।

## ପ୍ରତିଯୋଗିତାର ଫଳାଫଳ

ତୁମ୍ଭମାନଙ୍କ ଉତ୍ତର ଗୁଡିକ ବାସ୍ତବିକ ମୋତେ ବଡ଼ ଆଶାନ୍ୱିତ କରିଛି । ପ୍ରଶ୍ନଟି ଟିକିଏ କଷ୍ଟ ହୋଇଥିଲା ସତ, କିନ୍ତୁ ତୁମ୍ଭମାନଙ୍କ ପ୍ରଥମ ଚେଷ୍ଟା ପ୍ରଶଂସନୀୟ ।

୧ମ ପୁରସ୍କାର ଶ୍ରୀମାନ ଅଖିଳ (ସା. ନଂ. ୨) ପାଇଛନ୍ତି ।

ତାଙ୍କ ଉତ୍ତର—ପିଠା ଖାଇବାକୁ କାନ୍ଦିଲା କୁନି ।<br>
ଯେତେ ବୁଝାଇଲେ ନ ହେଲା ତୁନି ।<br>
ତାହା ଶୁଣି ବାପା କହିଲେ ଯାଇ<br>
ଏତେ କାନ୍ଦଗୋଳ ଏଇଥି ପାଇଁ !

୨ୟ ପୁରସ୍କାର ଶ୍ରୀମାନ ସୂର୍ଯ୍ୟମଣି (ସା. ନଂ ୩) ପାଇଛନ୍ତି ।

ତାଙ୍କ ଉତ୍ତର—"ମନୁଆଁ ଭାଇରେ ମନୁଆଁ ଭାଇ<br>
କାହିଁପାଇଁ ଗୋଳ କରୁଛୁ ତୁହି,<br>
ଆଣିଦେବା କୋରା ଆଜ ତୋପାଇଁ<br>
ଏତେ କାନ୍ଦଗୋଳ ଏଇଥି ପାଇଁ ?

୩ୟ ପୁରସ୍କାର ଶ୍ରୀମାନ ସହଦେବ (ସା. ନଂ ୧)ଙ୍କୁ ଦିଆଗଲା ।

( ତାଙ୍କ ଉତ୍ତର—୩୨ ପୃଷ୍ଠା ଦେଖନ୍ତୁ )



# ଓଡ଼ିଶା ଖବର

ତା ୨୩ । ୩— ଓଡ଼ିଶା ଆସେମ୍ବ୍ଲିରେ ଆଗତ ହୋଇଥିବା ଭାଗଚାଷ ବିଲ ସଂପର୍କୀୟ ଯାଞ୍ଚ କମିଟୀ ରିପୋର୍ଟ ପ୍ରକାଶ ପାଇଲା । ଏଥିରେ ଭାଗଚାଷୀ ଜମି ମାଲିକଙ୍କୁ ଉତ୍ପନ୍ନ ଫସଲର ଏକଚତୁର୍ଥାଂଶ ଦେବ । ଚାଷୀ ସାଧାରଣ ଜମିରୁ ମାଲିକଙ୍କୁ ଏକର ପିଚ୍ଛା ୪ମହଣ ଓ ଜଳଜମିରେ ୬ ମହଣ ପର୍ଯ୍ୟନ୍ତ ଦେଇ ପାରିବ । ଜମି ମାଲିକ ୭ ଏକର ଯାଏ ଜମି ଭାଗଚାଷୀଠାରୁ ହାତ ଚାଷ ପାଇଁ ନେଇ ଯାଇ ପାରିବ । ଡ଼ିପ ଜମି ୧୪ ଏକର ପର୍ଯ୍ୟନ୍ତ ମଧ୍ୟ ନେଇ ପାରିବ । ଏହି ଉଚ୍ଛେଦ କରିବାକୁ ହେଲେ ମେ ୧୫ ତାରିଖ ପୂର୍ବରୁ ଜିଲା ମାଜିଷ୍ଟ୍ରେଟଙ୍କ ଜରିଆରେ ଚାଷୀକୁ ନୋଟିସ୍ ଦେବାକୁ ହେବ ।

ତା ୨୪—ପୁରୀଠାରେ ବସିଥିବା ସର୍ବୋଦୟ ମେଳାରେ ଯୋଗଦେବା ନିମନ୍ତେ, ଭାରତର ରାଷ୍ଟ୍ରପତି ଡାଃ ରାଜେନ୍ଦ୍ର ପ୍ରସାଦ, କଂଗ୍ରେସ ସଭାପତି ଶ୍ରୀ ୟୁ: ଏନ୍ ଧେବର, ଶ୍ରୀ ଜୟପ୍ରକାଶ ନାରାୟଣ, କାକାସାହେବ କାଲେଲକାର, ଶ୍ରୀ ପୁରୁଷୋତ୍ତମ ଦାସ ଟଣ୍ଡନ ପ୍ରମୁଖ ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ଓଡ଼ିଶା ଆଗମନ ।

ତା ୩୦— କଟକ ପାର୍ଲିଆମେଣ୍ଟ ନିର୍ବାଚନ ମଣ୍ଡଳୀରୁ ଉପ ନିର୍ବାଚନରେ ଶ୍ରୀ [illegible]ର କିଶୋର ରାୟ ନିର୍ଦ୍ୱନ୍ଦରେ ନିର୍ବାଚିତ ହେଲେ ।

ତା ୩୧— ଅଗାମୀ ବର୍ଷ ଓଡ଼ିଶାର ପ୍ରତ୍ୟେକ ଜିଲାର ସଦର ମହକୁମା ସ୍କୁଲମାନଙ୍କରେ ଉଚ୍ଚ ମାଧ୍ୟମିକ ଶିକ୍ଷା ପ୍ରବର୍ତ୍ତନ କରାଯିବ । ଏଥିରୁ ଉତ୍ତୀର୍ଣ୍ଣ ଛାତ୍ରମାନେ ୩ ବର୍ଷିଆ ଡିଗ୍ରୀ କୋର୍ସ ଅଧ୍ୟୟନ କରିବେ ।

# ଭାରତ ଖବର

ତା ୧୬— କାମ୍ବୋଡ଼ିଆର ଗୋଟିଏ ଶୁଭେଚ୍ଛା ଦଳ ଭାରତ ଭ୍ରମଣରେ ଆସିଥିଲେ । ଏଥିରେ କାମ୍ବୋଡ଼ିଆର ଭୂତପୂର୍ବ ରାଜା ଶ୍ରୀ ନରୋତ୍ତମ ସିହ୍ନୁ ନାୟକ ଅଛନ୍ତି ।

ତା ୨୫—ବର୍ମାର ପ୍ରଧାନ ମନ୍ତ୍ରୀ ଘରେଇ ଭାବରେ ଭାରତ ପରିଦର୍ଶନରେ ଆସି ଦିଲ୍ଲୀରେ ପହଞ୍ଚିଲେ ।

ତା ୩୦—ଏପ୍ରିଲ ମାସ ୧୫ ତାରିଖ ମଧ୍ୟରେ ମିଶରର ପ୍ରଧାନମନ୍ତ୍ରୀ କର୍ଣ୍ଣେଲ ନାସେର୍, ଆଫଗାନିସ୍ଥାନ ଏବଂ ଉତ୍ତର ଓ ଦକ୍ଷିଣ ଭିଏଟ୍‌ନାମର ବୈଦେଶିକ ମନ୍ତ୍ରୀମାନେ ଭାରତ ଆସୁଛନ୍ତି ।

ତା ୨୮—ଆନ୍ଧ୍ରରେ ଶ୍ରୀ ଗୋପାଳ ରେଡ୍ଡିଙ୍କ ନେତୃତ୍ୱରେ ଗୋଟିଏ ୮ଜଣିଆ ମନ୍ତ୍ରୀମଣ୍ଡଳ ଗଠିତ ହେଲା ।

ତା ୨୯—ଜଣାଯାଇଛି ଯେ ପଣ୍ଡିତ ଜହରଲାଲ୍ ନେହେରୁ ଆସନ୍ତା ଜୁନ ପ୍ରଥମ ଭାଗରେ ରୁଷିଆ ପରିଭ୍ରମଣରେ ଯିବେ ।

# ବିଦେଶ ଖବର

ତା ୧୧।୩—ପେନିସିଲିନର ଆବିଷ୍କର୍ତ୍ତା ସାର୍ ଆଲେକ୍‌ଜାଣ୍ଡାର ଫ୍ଲେମିଂ ୭୩ ବର୍ଷ ବୟସରେ ପ୍ରାଣ-ତ୍ୟାଗ କଲେ । ସେ ଉକ୍ତ ବିଷୟରେ ନୋବେଲ ପୁରସ୍କାର ପାଇଥିଲେ ।

ତା ୧୨—ନେପାଳର ରାଜା ତ୍ରିଭୁବନଦେବ ସ୍ୱିଜରଲାଣ୍ଡର ଜୁରିଚଠାରେ ପ୍ରାଣତ୍ୟାଗ କଲେ ।

ତା ୨୦—ପାକିସ୍ଥାନର ସିନ୍ଧୁ ପ୍ରଦେଶରେ ପୂର୍ବତନ ସ୍ପିକର, ମୁଖ୍ୟମନ୍ତ୍ରୀ ଓ ଆଉ ଜଣେ ମନ୍ତ୍ରୀଙ୍କୁ ଷଡ଼ଯନ୍ତ୍ର ଅଭିଯୋଗରେ ଗିରଫ କରାଯାଇଅଛି ।

ତା ୨୭—ପାକିସ୍ଥାନର ବଡ଼ଲାଟ ମିଃ ଗୋଲାମ ମହମ୍ମଦ ଜରୁରୀ ଅବସ୍ଥା ଘୋଷଣା କରି ଦେଶର ସର୍ବୋଚ୍ଚ ଶାସନ କ୍ଷମତା ନିଜ ହାତକୁ ନେଲେ ।

—୦—




## ସାମୁଦ୍ରିକ ସ୍ରୋତର ମାନଚିତ୍ର

ଯୁକ୍ତରାଷ୍ଟ୍ର ଆମେରିକାର ସ୍କ୍ରିପସ୍ ସମୁଦ୍ରତତ୍ତ୍ୱ ଅନୁଷ୍ଠାନର ବୈଜ୍ଞାନିକମାନେ ସମୁଦ୍ର ସ୍ରୋତର ମାନଚିତ୍ର ତିଆରି କରିବା ପାଇଁ ଗୋଟିଏ ବିଚିତ୍ର ଉପାୟ ଅବଲମ୍ବନ କରିଛନ୍ତି । ସେମାନେ ୧୯୫୫ ମଧ୍ୟରେ ୧୨୦୦୦ ଟି ଠିପିଦିଆ ବୋତଲ ସମୁଦ୍ର ମଧ୍ୟରେ ବିଭିନ୍ନ ସ୍ଥାନରେ ପକାଇବେ । ଉକ୍ତ ବୋତଲ ମଧ୍ୟରେ ଲେଖାହୋଇ କେଉଁ ସ୍ଥାନରେ ଏହା ପକାଗଲା ଏବଂ ଏହାକୁ ଯେ ପାଇବ, ତାକୁ ଫେରାଇ ଦେବାପାଇଁ ମଧ୍ୟ ଅନୁରୋଧ କରାଯିବ । ଦକ୍ଷିଣ ଆମେରିକାର ପଶ୍ଚିମ ଉପକୂଳରେ ଏହିପରି ଗୋଟିଏ ବୋତଲ ପକାଇ ଦିଆ ଯାଇଥିଲା । ତାହା ଦୁଇ ହଜାର ମାଇଲରୁ ଅଧିକ ଦୂରସ୍ଥ ଭେନୁଆ ଲେଭୁ ଦ୍ୱୀପରେ ମିଳିଛି ।

## ତରଳ ଗ୍ରାଫାଇଟ ଦ୍ୱାରା ପେନ୍‌ସିଲ

ଆମେରିକାରେ ଗୋଟିଏ ନୂଆ ଧରଣର ପେନ୍‌ସିଲ ପ୍ରସ୍ତୁତ କରାଯାଇଛି । ଏଥିରେ ତରଳ ଗ୍ରାଫାଇଟ୍ ଦିଆଯାଇଛି ଏବଂ ଏହା ସାଧାରଣ ପେନ୍‌ସିଲର ୭ଗୁଣ ଅଧିକ ଲେଖିପାରିବ । ଏଥିରେ ୩ମାଇଲ ଲମ୍ବର ଗୋଟିଏ ସରଳ ରେଖା ଟାଣାଯାଇ ପାରିବ । ସାଧାରଣ ପେନ୍‌ସିଲ ଶେଷ ହେବା ପୂର୍ବରୁ କିଛି ଅଂଶ ଅକାମୀ ହୋଇଥାଏ । ମାତ୍ର ଏଥିରେ ସେପରି ହେବନାହିଁ ।

## ବିମାନରେ ବିଜ୍ଞାନ ଶିକ୍ଷା

ଫ୍ରାନ୍‌ସର ପାରିସ ୟୁନିଭର୍‌ସିଟିରେ ନୂଆହୋଇ ବିମାନରେ ବିଜ୍ଞାନ ଶିକ୍ଷା ଦିଆ ଯିବାର ପାଠ୍ୟକ୍ରମ ରଖା ଯାଇଛି । ଛାତ୍ରମାନେ ବିମାନରେ ଉଡ଼ ବିଜ୍ଞାନର ବିଭିନ୍ନ ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ହାସଲ କରିବେ । ଛାତ୍ରମାନଙ୍କ ସହିତ ଜଣେ ପ୍ରଫେସର ଯିବେ ଏବଂ ସେ ୯୦ ମିନିଟ କାଳ ଛାତ୍ରମାନଙ୍କୁ ବିଭିନ୍ନ ବିଷୟରେ ଶିକ୍ଷା ଦେବେ । ପୂର୍ବରୁ ଛାତ୍ରମାନେ ମାନଚିତ୍ର ଅନୁଶୀଳନ କରି ପୁସ୍ତକଗତ ବିଦ୍ୟା ଅଧ୍ୟୟନରେ ଯେତେ ସମୟ ନେଉଥିଲେ, ଏହାଦ୍ୱାରା ସେତେ ଅଧିକ ସମୟ ଲାଗିବ ନାହିଁ ଏବଂ ଛାତ୍ର ଖୁବ୍ ସହଜରେ ମଧ୍ୟ ଏହା ବୁଝିପାରିବ । ଏପର୍ଯ୍ୟନ୍ତ ଏପରି ବ୍ୟବସ୍ଥା ଅନ୍ୟ କୌଣସିଠାରେ ହୋଇ ନ ଥିଲା ।




ଭାରତୀୟ ଚଳଚ୍ଚିତ୍ରରେ ନିମ୍ନଲିଖିତ ୧୦ ଜଣ ବିଭିନ୍ନ ବିଷୟରେ ଉତ୍କୃଷ୍ଟ ବିବେଚିତ ହୋଇ ପୁରସ୍କୃତ ହୋଇଛନ୍ତି । ଉକ୍ତ ପୁରସ୍କାର ବମ୍ବେର ମୁଖ୍ୟମନ୍ତ୍ରୀ ଶ୍ରୀ ମୋରାରଜୀ ଦେଶାଇଙ୍କ ଦ୍ୱାରା ଗତ ତା ୧୩ରିଖରେ ପ୍ରଦତ୍ତ ହୋଇଥିଲା । ଏହି ପୁରସ୍କାର ୧୯୫୩-୫୪ର କ୍ଲେୟାର ପୁରସ୍କାର ।

ମୀନାକୁମାରୀ—ବିଶିଷ୍ଟ ଅଭିନେତ୍ରୀ; ଭାରତଭୂଷଣ ବିଶିଷ୍ଟ ଅଭିନେତା; ବିମଲ ରାୟ ୨ୟ ଥର ପାଇଁ ବିଶିଷ୍ଟ ନିର୍ଦ୍ଦେଶକ ('ପରିଣୀତା'ରେ); ରାଜକପୁର ବିଶିଷ୍ଟ ଉତ୍ପାଦକ (Producer)—ବୁଟପଲିଶ ନିମନ୍ତେ; ଉଷାକିରଣ-ବିଶିଷ୍ଟ ସହକାରୀ ଅଭିନେତ୍ରୀ; ଡେଭିଡ୍ ଆବ୍ରାହମ-ବିଶିଷ୍ଟ ସହକାରୀ ଅଭିନେତା; ପଣ୍ଡିତ ମୁଖିରାମ ଶର୍ମା ଉତ୍କୃଷ୍ଟ ଗଳ୍ପପାଇଁ; ତାରା ଦତ୍ତ ଚଳଚ୍ଚିତ୍ର ଛବି ଗ୍ରହଣ ; ସଙ୍ଗୀତ ନିର୍ଦ୍ଦେଶକ-ଶଚୀନ ଦେବ ବର୍ମନ୍ ଗୀତରେ ଏବଂ ଇଶାନ ଘୋଷ ଶବ୍ଦ ରେକର୍ଡିଂ ନିମନ୍ତେ ପୁରସ୍କାର ପାଇଛନ୍ତି ।

—○—

## ଗତସଂଖ୍ୟା 'ବୁଦ୍ଧିପରୀକ୍ଷା' ଉତ୍ତର

୧ । ୫ ଖଣ୍ଡ, କାରଣ ଗଣ୍ଠି ପକାଇବାଦ୍ୱାରା ପ୍ରତ୍ୟେକ ଦଉଡ଼ିର ଲମ୍ବ କିଛି କିଛି କମିଯିବ ।

୨ । (ଗ)

୩ । (କ) ରମେଶ (ଖ) ନିରୁ (ଗ) ନା (ଘ) ଗଣେଶ ଓ ନିରୁ ।

୪ । (ଖ) କରତ, ରକତ (ଗ) ପତା, ତାପ (ଘ) ବଡ, ଡବ (ଙ) ମାଜ, ଜମା ।

(୨୯ ପୃଷ୍ଠାର ଅବଶିଷ୍ଟାଂଶ)

ତାଙ୍କ ଉତ୍ତର—ଶିଶୁପୁବ ତବ ଲଭ କଲ୍ୟାଣ
ମଙ୍ଗଳେ ଡେକଛୁ ମର୍ତ୍ତ୍ୟ ଭୁବନ
ଯୋଗେଇଥିଲେ ହଉ ନେଲେ ଛଡ଼ାଇ
ଏତେ କାନ୍ଦଗୋଳ ଏଇଥି ପାଇଁ ?

ମୁଁ ସେହି କବିତାଟିକୁ ଏହିପରି ପୂରଣ କରୁଛି । ତୁମ୍ଭକୁ କେମିତି ଲାଗିବ କେଜାଣି—

ତୋ'ର ଭାଇ ସେ ଅଜ୍ଞାନ ପିଲା,
ଖେଳୁ ଖେଳୁ ଭାଙ୍ଗି ଦେଲା ତ ଦେଲା ।
ଆଉ ଆଣି ଦେବ ନୂଆ କଣ୍ଢେଇ,
ଏତେ କାନ୍ଦଗୋଳ ଏଇଥି ପାଇଁ ?

## ଆସନ୍ତାଥର ପାଇଁ ପ୍ରତିଯୋଗିତା—

"ଘାଞ୍ଚକଥା ଜାଣିବାପାଇଁ ହେଲେ ପତ୍ରପତ୍ରିକା ପଢ଼ିବା ଆବଶ୍ୟକ । ଓଡ଼ିଆ ପିଲାଙ୍କ ପକ୍ଷରେ 'ସଂସାର' ବିଶେଷ ଉପଯୋଗୀ କାରଣ·········।

୨୫ ବା ୩୦ଟି ଶବ୍ଦ ଭିତରେ ଶୂନ୍ୟସ୍ଥାନ ପୂରଣ କର । ଶ୍ରେଷ୍ଠ ଉତ୍ତରଦାତା ପୁରସ୍କାର ପାଇବେ ।

## ନିୟମାବଳୀ—

୧ । ମନେରଖ ଯେ ଏକବର୍ଷପାଇଁ ସଭ୍ୟଚାନ୍ଦା ଟ ୦/ । ଯେଉଁମାନେ ବର୍ତ୍ତମାନ ଟ ·/ ଦେଇ ସଭ୍ୟ ହେଉଛନ୍ତି, ସେମାନଙ୍କୁ ପୁଣି 'ସଂସାର'ର ୫ମ ବର୍ଷ ଭିତରେ ବାର୍ଷିକ ସଭ୍ୟ ଚାନ୍ଦା ଟ ୦/ ଦେବାକୁ ପଡ଼ିବ ।

୨ । ପତ୍ରବନ୍ଧୁ ବିଭାଗକୁ ଏହାର ସଙ୍ଗେ ମିଶାଇ ଦିଆଯାଇଛି । ସେଥିପାଇଁ ସ୍ୱତନ୍ତ୍ର ଚାନ୍ଦା ନିଆଯିବ ନାହିଁ । ଯେଉଁମାନେ ଚାନ୍ଦା ଦେଇଥିଲେ ସେମାନଙ୍କୁ ସଭ୍ୟ କରିନିଆଗଲା । ପ୍ରତ୍ୟେକ ସଭ୍ୟ ଇଚ୍ଛାଅନୁଯାୟୀ ପରସ୍ପର ମଧ୍ୟରେ ପତ୍ରବିନିମୟ କରିପାରନ୍ତି । ଏ ସମ୍ପର୍କରେ ଆସନ୍ତା ସଂଖ୍ୟାରେ ପରାମର୍ଶ ଦିଆଯିବ । ପ୍ରତ୍ୟେକ ସଭ୍ୟ ପ୍ରତିଯୋଗିତାରେ ଯୋଗଦେଇ-ପାରିବେ ।

## ହିସାବ-ପଞ୍ଜିକା

**ଭାରତରେ ସାକ୍ଷର ସଂଖ୍ୟା**— ସରକାରଙ୍କ ୧୯୫୪ ର ନଭେମ୍ବର ଜନସୁମାରି ସମ୍ବନ୍ଧୀୟ ରିପୋର୍ଟରୁ ପ୍ରକାଶ ଯେ ଭାରତର ୩୬ କୋଟି ଲୋକଙ୍କ ଭିତରୁ ୬ କୋଟି ସାକ୍ଷର ଅର୍ଥାତ୍ ଏତିକ ଲୋକ ଅନ୍ତତଃ ଖଣ୍ଡେ ସରଳ ଚିଠି ଲେଖି ପଢ଼ି ପାରିବାକୁ ସମର୍ଥ । ଅବଶିଷ୍ଟ ୩୦ କୋଟିଙ୍କ ମଧ୍ୟରୁ ପ୍ରାୟ ୬ ଲକ୍ଷ ପଢ଼ିପାରନ୍ତି ମାତ୍ର ଲେଖି ଜାଣନ୍ତି ନାହିଁ । ସୁତରାଂ ମୋଟାମୋଟି ସମଗ୍ର ଭାରତର ସାକ୍ଷର ସଂଖ୍ୟା ଶତକଡ଼ା ୧୬.୬ । ବିଭିନ୍ନ ଅଞ୍ଚଳର ହିସାବ ଏହିପରି—ପଶ୍ଚିମ ଭାରତ ୧୩.୮, ଦକ୍ଷିଣ ଭାରତ ୨୨.୮, ପୂର୍ବ ଭାରତ ୧୬.୮ ଏବଂ ଉତ୍ତର ଭାରତ ୧୦.୮ ।

ସ୍ତ୍ରୀମାନଙ୍କ ଅପେକ୍ଷା ପୁରୁଷ ସାକ୍ଷର ଅଧିକ, ପୁରୁଷ ୨୪.୯ ଏବଂ ସ୍ତ୍ରୀ ୭.୯ ସାକ୍ଷର ।

୫ବର୍ଷରୁ ଛୋଟ ପିଲାଙ୍କୁ ହିସାବରୁ ବାଦ୍ ଦେଲେ ସହର ମାନଙ୍କରେ ୧୦୦ରେ ୫୫ ଜଣ ପୁରୁଷ ଓ ୨୭ ଜଣ ସ୍ତ୍ରୀ ଏବଂ ମଫସଲ ଅଞ୍ଚଳରେ ୧୦୦ ରେ ୨୪ ଜଣ ପୁରୁଷ ଓ ୬ ଜଣ ସ୍ତ୍ରୀ ଲେଖି ପଢ଼ି ଜାଣନ୍ତି ।

ଯେଉଁ ୬ କୋଟିକୁ ସାକ୍ଷର ଧରାଯାଇଛି ସେଥିରୁ ୯୦ ଲକ୍ଷ ମାଇନର ଯାଏ ପଢ଼ିଛନ୍ତି । ମାଟ୍ରିକ ପାଶ୍ କରିଥିବା ଲୋକଙ୍କ ସଂଖ୍ୟା ୩୮ ଲକ୍ଷ । ଏମାନଙ୍କ ଭିତରେ ୫ ଲକ୍ଷ ସ୍ତ୍ରୀ ଅଛନ୍ତି । ଏହି ହିସାବ ଅନୁଯାୟୀ ପ୍ରତି ୧ ହଜାର ଲୋକରେ କେବଳ ୧୧ ଜଣ ହାଇସ୍କୁଲରୁ ଉତ୍ତୀର୍ଣ୍ଣ ହୋଇଥିବାର ଲୋକ ଅଛନ୍ତି ।

ଏହି ରିପୋଟରୁ ଆହୁରି ଜଣାଯାଏ ଯେ ବିଶ୍ୱ-ବିଦ୍ୟାଳୟର ଡିଗ୍ରୀ ଓ ଡିପ୍ଲୋମା ଲାଭ କରିଥିବା ଲୋକଙ୍କ ସଂଖ୍ୟା ୮ ଲକ୍ଷ ।

Printed & Published by Sri R. K. Nanda B. A. D. Ed. at the Parijat Press,
Telengabazar, Cuttack-1 —1955.